

# ପରମ ବୀରଚକ୍ର

## ଅମର ବିଜେତାଙ୍କ ଅମର କଥା



ଶ୍ରୀକାନ୍ତ ମିଶ୍ର

# ପରମବୀରଚକ୍ର -

## ଅମର ବିଜେତାଙ୍କ ଅମର କଥା

ଶ୍ରୀ ଶ୍ରୀକାନ୍ତ କୁମାର ମିଶ୍ର

ମାରୁତୀ ପ୍ରକାଶନୀ
ଭୁବନେଶ୍ୱର-୨

# ପରମବୀରଚକ୍ର-
## ଅମର ବିଜେତାଙ୍କ ଅମର କଥା

ଲେଖକ :-
ଶ୍ରୀ ଶ୍ରୀକାନ୍ତ କୁମାର ମିଶ୍ର


ପ୍ରକାଶିକା :-
ଶ୍ରୀମତୀ ପ୍ରତିମା ମିଶ୍ର
''ମାରୁତିନିବାସ''
ଶ୍ରୀରାମନଗର
ଭୁବନେଶ୍ୱର-୨
✆: ୪୩୪୮୩୦

ପ୍ରଥମ ପ୍ରକାଶ :
ମାର୍ଚ୍ଚ, ୨୦୦୦

ମୁଦ୍ରଣ :-
ମିଡ଼ିଆ ପ୍ରେସ୍
ଅଶୋକ ନଗର,
ଭୁବନେଶ୍ୱର - ୯

ପ୍ରଚ୍ଛଦ ଶିଳ୍ପୀ :-
ରୋହିତ କୁମାର ବଟୁ

ମୂଲ୍ୟ:-
ଟ ୨୦.୦୦
(କୋଡ଼ିଏଟଙ୍କା ମାତ୍ର)

## ପଦେଅଧେ ..................

"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ" । ଜନ୍ମଭୂମିର ଗୌରବରକ୍ଷା ନିମନ୍ତେ, ଭାରତମାତାର ସନ୍ତାନ ସର୍ବଦା ତତ୍ପର । ସେମାନଙ୍କ ମଧ୍ୟରୁ, ଯେଉଁ କେତେଜଣ ପ୍ରାଣପାତ ସମ୍ମୁଖ ସଂଗ୍ରାମ କରି ଅମର ହୋଇ ରହିଯାଇଛନ୍ତି ଏବଂ ଦେଶର ସର୍ବୋଚ୍ଚ ସାହସିକତାର ପରିଚୟ ଶତ୍ରୁ ସମ୍ମୁଖରେ ଦେଇଛନ୍ତି; ସେମାନଙ୍କୁ "ପରମବୀରଚକ୍ର" ପୁରସ୍କାର ପ୍ରଦାନ କରାଯାଇଛି । ଏହି ବୀରମାନଙ୍କର ଅମର ଗାଥାର କୀୟଦଂଶ ଏହି ପୁସ୍ତିକାର ବିଷୟବସ୍ତୁ । କୋମଳମତି ଛାତ୍ରମାନଙ୍କ ମନରେ ସ୍ୱଦେଶପ୍ରୀତି ଗଭୀର ଆତ୍ମବିଶ୍ୱାସ, କଠୋର ପରିଶ୍ରମ ନିମନ୍ତେ ପ୍ରେରଣା ଓ ସାହସିକତାର ଚରମ ପରାକାଷ୍ଠା ଭାବ ଉଦ୍ରେକ କରିବା ଏହି ପୁସ୍ତିକାର ପବିତ୍ର ଲକ୍ଷ୍ୟ ।

ଭାରତ ସରକାରଙ୍କ ପ୍ରତିରକ୍ଷା ମନ୍ତ୍ରଣାଳୟର ଇତିହାସ ଶାଖାଦ୍ୱାରା ପ୍ରକାଶିତ "Stories of Heroism" (Part I) 1987 ପୁସ୍ତକରୁ ଅନୂଦିତ ଅମର ଜବାନମାନଙ୍କ ସର୍ବୋଚ୍ଚ ବଳିଦାନ କାହାଣୀ ଓଡ଼ିଶାର ପ୍ରତ୍ୟେକ ଦେଶପ୍ରେମୀଙ୍କୁ, ଜାତୀୟ ଚେତନାରେ ଉଦ୍‌ବୁଦ୍ଧ କରିବ ବୋଲି ଆଶା । ଉକ୍ତ ପୁସ୍ତକର ପ୍ରଣେତା ଡ଼ଃ. ବି. ଚକ୍ରବର୍ତ୍ତୀଙ୍କ ସମେତ, ଅନୁବାଦ ନିମନ୍ତେ ପ୍ରେରଣା ଦେଇଥିବା ଅର୍ଥବିଭାଗର ପଦାଧିକାରୀ ଶ୍ରୀଯୁକ୍ତ ଦୀନେଶ କୁମାର ଦ୍ୱିବେଦୀ, ଶ୍ରୀଯୁକ୍ତ ଅଶୋକ କୁମାର ମିଶ୍ର, ସହକର୍ମୀ ଶ୍ରୀଯୁକ୍ତ ରଙ୍ଗନାଥ ରଥ, ଶ୍ରୀଯୁକ୍ତ ଶରତ କୁମାର ମିଶ୍ର ଓ ଶୁଭେଚ୍ଛୁ ମଣ୍ଡଳୀଙ୍କ ନିକଟରେ ମୁଁ କୃତଜ୍ଞ ।

ପୁସ୍ତିକାଟି ଆଦୃତ ହେଲେ ଶ୍ରମ ସାର୍ଥକ ହେବ । ଶେଷରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ସମାଜ ସଂସ୍କାରକ ତଥା ସାହିତ୍ୟିକ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ନିମ୍ନୋକ୍ତ ଉକ୍ତି ସ୍ମରଣ କରି, ମାତୃଭୂମିର ପଦବନ୍ଦନା କରୁଛି ।

"ଜନମଭୂମିଯେ ମାଟି ପଥରର
ଜନନୀ ଠୁଁ ବଳି ବଡ଼ ।
ସେ ଜନମ ଭୂମି ସେବା ଯେ କରଇ
ନରଜନ୍ମ ଧନ୍ୟ ତା'ର ॥

ଶ୍ରୀକାନ୍ତ କୁମାର ମିଶ୍ର

ଭୁବନେଶ୍ୱର
ତା ୧୦.୨.୨୦୦୦
ଶ୍ରୀପଞ୍ଚମୀ

# ପରମବୀରଚକ୍ର-
## ଅମର ବିଜେତାଙ୍କ ଅମର କଥା

ଲେଖକ :-
ଶ୍ରୀ ଶ୍ରୀକାନ୍ତ କୁମାର ମିଶ୍ର


ପ୍ରକାଶିକା :-
ଶ୍ରୀମତୀ ପ୍ରତିମା ମିଶ୍ର
''ମାରୁତିନିବାସ''
ଶ୍ରୀରାମନଗର
ଭୁବନେଶ୍ୱର-୨
✆: ୪୩୪୮୩୦

ପ୍ରଥମ ପ୍ରକାଶ :
ମାର୍ଚ୍ଚ, ୨୦୦୦

ମୁଦ୍ରଣ :-
ମିଡ଼ିଆ ପ୍ରେସ୍
ଅଶୋକ ନଗର,
ଭୁବନେଶ୍ୱର - ୯

ପ୍ରଚ୍ଛଦ ଶିଳ୍ପୀ :-
ରୋହିତ କୁମାର ବଟୁ

ମୂଲ୍ୟ:-
ଟ ୨୦.୦୦
(କୋଡ଼ିଏଟଙ୍କା ମାତ୍ର)

## ପଦେଅଧେ .................

"ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ" । ଜନ୍ମଭୂମିର ଗୌରବରକ୍ଷା ନିମନ୍ତେ, ଭାରତମାତାର ସନ୍ତାନ ସର୍ବଦା ତତ୍ପର । ସେମାନଙ୍କ ମଧ୍ୟରୁ, ଯେଉଁ କେତେଜଣ ପ୍ରାଣପାତ ସମ୍ମୁଖ ସଂଗ୍ରାମ କରି ଅମର ହୋଇ ରହିଯାଇଛନ୍ତି ଏବଂ ଦେଶର ସର୍ବୋଚ୍ଚ ସାହସିକତାର ପରିଚୟ ଶତ୍ରୁ ସମ୍ମୁଖରେ ଦେଇଛନ୍ତି; ସେମାନଙ୍କୁ "ପରମବୀରଚକ୍ର" ପୁରସ୍କାର ପ୍ରଦାନ କରାଯାଇଛି । ଏହି ବୀରମାନଙ୍କର ଅମର ଗାଥାର କୀୟଦଂଶ ଏହି ପୁସ୍ତିକାର ବିଷୟବସ୍ତୁ । କୋମଳମତି ଛାତ୍ରମାନଙ୍କ ମନରେ ସ୍ୱଦେଶପ୍ରୀତି ଗଭୀର ଆତ୍ମବିଶ୍ୱାସ, କଠୋର ପରିଶ୍ରମ ନିମନ୍ତେ ପ୍ରେରଣା ଓ ସାହସିକତାର ଚରମ ପରାକାଷ୍ଠା ଭାବ ଉଦ୍ରେକ କରିବା ଏହି ପୁସ୍ତିକାର ପବିତ୍ର ଲକ୍ଷ୍ୟ ।

ଭାରତ ସରକାରଙ୍କ ପ୍ରତିରକ୍ଷା ମନ୍ତ୍ରଣାଳୟର ଇତିହାସ ଶାଖାଦ୍ୱାରା ପ୍ରକାଶିତ "Stories of Heroism" (Part I) 1987 ପୁସ୍ତକରୁ ଅନୂଦିତ ଅମର ଜବାନମାନଙ୍କ ସର୍ବୋଚ୍ଚ ବଳିଦାନ କାହାଣୀ ଓଡ଼ିଶାର ପ୍ରତ୍ୟେକ ଦେଶପ୍ରେମୀଙ୍କୁ, ଜାତୀୟ ଚେତନାରେ ଉଦ୍‌ବୁଦ୍ଧ କରିବ ବୋଲି ଆଶା । ଉକ୍ତ ପୁସ୍ତକର ପ୍ରଣେତା ଡ଼ଃ. ବି. ଚକ୍ରବର୍ତ୍ତୀଙ୍କ ସମେତ, ଅନୁବାଦ ନିମନ୍ତେ ପ୍ରେରଣା ଦେଇଥିବା ଅର୍ଥବିଭାଗର ପଦାଧିକାରୀ ଶ୍ରୀଯୁକ୍ତ ଦୀନେଶ କୁମାର ଦ୍ୱିବେଦୀ, ଶ୍ରୀଯୁକ୍ତ ଅଶୋକ କୁମାର ମିଶ୍ର, ସହକର୍ମୀ ଶ୍ରୀଯୁକ୍ତ ରଙ୍ଗନାଥ ରଥ, ଶ୍ରୀଯୁକ୍ତ ଶରତ କୁମାର ମିଶ୍ର ଓ ଶୁଭେନ୍ଦୁ ମଣ୍ଡଳୀଙ୍କ ନିକଟରେ ମୁଁ କୃତଜ୍ଞ ।

ପୁସ୍ତିକାଟି ଆଦୃତ ହେଲେ ଶ୍ରମ ସାର୍ଥକ ହେବ । ଶେଷରେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ସମାଜ ସଂସ୍କାରକ ତଥା ସାହିତ୍ୟିକ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କର ନିମ୍ନୋକ୍ତ ଉକ୍ତି ସ୍ମରଣ କରି, ମାତୃଭୂମିର ପଦବନ୍ଦନା କରୁଛି ।

"ଜନମଭୂମିଯେ          ମାଟି ପଥରର
ଜନନୀ ଠୁଁ ବଳି ବଡ଼ ।
ସେ ଜନମ ଭୂମି          ସେବା ଯେ କରଇ
ନରଜନ୍ମ ଧନ୍ୟ ତା'ର ॥

ଶ୍ରୀକାନ୍ତ କୁମାର ମିଶ୍ର

ଭୁବନେଶ୍ୱର
ତା ୧୦.୨.୨୦୦୦
ଶ୍ରୀପଞ୍ଚମୀ

# ଉତ୍ସର୍ଗ

''ପରମ ପୂଜନୀୟ ନନା ଓ ବୋଉଙ୍କ ଉଦ୍ଦେଶ୍ୟରେ
ଉତ୍ସର୍ଗୀକୃତ ।''

# ସୂଚୀପତ୍ର

# ପରମବୀର ଚକ୍ର : ଅମର ବିଜେତାଙ୍କ ଅମରକଥା

ବହୁ ପୂର୍ବରୁ ଆମ ଦେଶରେ ସାହସିକତା ଓ ବୀରୋଚିତ କାର୍ଯ୍ୟ ପାଇଁ ଯୋଗ୍ୟ ବ୍ୟକ୍ତିମାନଙ୍କୁ ପୁରସ୍କାର ପ୍ରଦାନ ପ୍ରଥା ପ୍ରଚଳିତ ହୋଇଆସୁଛି ।

ପୁରାତନ ଯୁଗରେ ଜନ୍ମଭୂମିର ସୁରକ୍ଷା ପାଇଁ ଅପୂର୍ବ ବୀରତ୍ୱ ପ୍ରଦର୍ଶନ ଓ ସାହସିକତା ପାଇଁ ସମ୍ମାନ ପ୍ରଦର୍ଶନ ପୂର୍ବକ ଯୋଗ୍ୟବ୍ୟକ୍ତିମାନଙ୍କୁ ଭୂମି, ଅଳଙ୍କାର, ବହୁମୂଲ୍ୟ ପଦମର୍ଯ୍ୟାଦାସୂଚକ ପରିଚ୍ଛଦ ଇତ୍ୟାଦି ପ୍ରଦାନ କରାଯାଉଥିଲା । ବ୍ରିଟିଶ୍ ଶାସନକାଳରେ ଏହି ସର୍ବୋଚ୍ଚ ସାହସିକତା ପ୍ରଦର୍ଶନ ପାଇଁ ଯୋଗ୍ୟବ୍ୟକ୍ତିମାନଙ୍କୁ ''ଭିକ୍ଟୋରିଆ କ୍ରସ'' ପୁରସ୍କାର ସ୍ୱରୂପ ଦିଆଯାଉଥିଲା । ଭାରତ ସରକାର ସ୍ୱାଧୀନତା ପ୍ରାପ୍ତି ପରେ ସାହସିକ କାର୍ଯ୍ୟପାଇଁ ଅନେକ ପୁରସ୍କାର ପ୍ରବର୍ତ୍ତନ କରିଛନ୍ତି । ଏହି ସବୁ ପୁରସ୍କାର ଭିତରେ ''ପରମବୀର ଚକ୍ର'' ହେଉଛି ସର୍ବୋଚ୍ଚ ସାହସିକତା ପୁରସ୍କାର ଏବଂ ଏହା ୧୯୫୦ ମସିହା ଜାନୁୟାରୀ ମାସ ୨୬ ତାରିଖରେ ଭାରତ ଏକ ସାର୍ବଭୌମ ଗଣତନ୍ତ୍ର ରାଷ୍ଟ୍ରରେ ପରିଣତ ହେବା ଦିନ ଠାରୁ ପ୍ରବର୍ତ୍ତିତ ହେଲା । କିନ୍ତୁ ଏହାକୁ ୧୯୪୭ ମସିହା ଅଗଷ୍ଟମାସ ୧୫ ତାରିଖ ଠାରୁ କାର୍ଯ୍ୟକାରୀ କରାଗଲା । ଏହାର ସ୍ଥାନ ଦେଶର ସର୍ବୋଚ୍ଚ ଜାତୀୟ ପୁରସ୍କାର ''ଭାରତ ରତ୍ନ''ର ତଳକୁ ରହିଛି ।

''ପରମବୀର ଚକ୍ର'' ଏକ କଳାରଙ୍ଗର ବ୍ରୋଞ୍ଜ ପଦକ । ଏହାର ବ୍ୟାସ ୩.୪୯ ସେ.ମି. ଅଟେ । ଏହାର ଏକ ପାର୍ଶ୍ୱରେ ଦେବରାଜ ''ଇନ୍ଦ୍ର''ଙ୍କର ବଜ୍ରର ଚାରୋଟି ଚିତ୍ର ଏବଂ ମଧ୍ୟଭାଗରେ ରାଷ୍ଟ୍ରର ମୂଳମନ୍ତ୍ର ସହ ସଙ୍କେତ ରହିଛି । ଏହାର ଅପରପାର୍ଶ୍ୱରେ ହିନ୍ଦୀ ଓ ଇଂରାଜୀ ଭାଷାରେ ''ପରମବୀର ଚକ୍ର'' ଲେଖାଯାଇଛି ଓ ଦୁଇଟି ପଦ୍ମ ଫୁଲର ଚିତ୍ର ଅଙ୍କନ କରାଯାଇଛି । ଏହାକୁ ବାମଛାତିରେ ପିନ୍ଧାଯାଏ ଏବଂ ଏହା ୩.୧୭ ସେ.ମି. ଓସାର ବିଶିଷ୍ଟ ଏକ ବାଇଗଣି ରଙ୍ଗର ରିବାଣ୍ଡରୁ ଓହଳି ଥାଏ । ପରମବୀର ଚକ୍ର ପୁରସ୍କାର ଶତ୍ରୁ ସମ୍ମୁଖରେ ସ୍ଥଳ, ସମୁଦ୍ର କିମ୍ବା ବାୟୁରେ ସବୁଠାରୁ ଉତ୍କୃଷ୍ଟ ସାହସିକତା କିମ୍ବା ପୂର୍ବରୁ ଖ୍ୟାତି ସମ୍ପନ୍ନ ବିରୋଚିତ କାର୍ଯ୍ୟ ଅଥବା ଆତ୍ମତ୍ୟାଗ ପାଇଁ ଯୋଗ୍ୟବ୍ୟକ୍ତିଙ୍କୁ ଭାରତର ରାଷ୍ଟ୍ରପତିଙ୍କ ଦ୍ୱାରା ପ୍ରଦାନ କରାଯାଇଥାଏ । ଏହାକୁ ମରଣୋତ୍ତର ଭାବରେ ମଧ୍ୟ ପ୍ରଦାନ କରାଯାଇପାରେ । ୧୯୮୮ ମସିହା ସୁଦ୍ଧା ଯେଉଁ ୧୫ ଜଣ ଅମର ସୈନିକଙ୍କୁ ଏହି ପୁରସ୍କାର ପ୍ରଦାନ କରାଯାଇଛି, ସେମାନଙ୍କର ଅମର ବୀରତ୍ୱ କାହାଣୀକୁ ସଂକ୍ଷେପରେ ଏଠାରେ ଅବତାରଣା କରାଯାଇଛି ।

# ଭାରତ - ପାକିସ୍ତାନ ଯୁଦ୍ଧ ୧୯୪୭-୪୮

## ମେଜର ସୋମନାଥ ଶର୍ମା



ଭାରତ ୧୯୪୭ ମସିହା ଅଗଷ୍ଟମାସ ୧୫ ତାରିଖରେ ସ୍ୱାଧୀନ ହେଲା ସତ, କିନ୍ତୁ ଦେଶ ବିଭାଜନ, ସାମ୍ପ୍ରଦାୟିକ ଦଙ୍ଗା ଜାମ୍ମୁକାଶ୍ମୀରରେ ଆଦିବାସୀ ଓ ପାକିସ୍ତାନ ଆକ୍ରମଣ ଇତ୍ୟାଦି ସମସ୍ୟାକୁ ସଙ୍ଗରେ ନେଇ ଆସିଥିଲା । ଦେଶ ସ୍ୱାଧୀନ ହେବାର ଅଳ୍ପ କେତେମାସ ନ ଯାଉଣୁ, ପାକିସ୍ତାନ ଜାମ୍ମୁକାଶ୍ମୀର ଅଞ୍ଚଳରେ ଆକ୍ରମଣର ଚକ୍ରାନ୍ତ କଲା । ପାକିସ୍ତାନ ସୈନ୍ୟବାହିନୀର ମେଜର ଜେନେରାଲ ଆକବର ଖାଁ ଏହାର ନେତୃତ୍ୱ ନେଇଥିଲେ । ଉପରୋକ୍ତ ଯୋଜନା ଅନୁଯାୟୀ, ୧୯୪୭ ମସିହା ଅକ୍ଟୋବର ମାସ ୨୨ ତାରିଖରେ ପ୍ରାୟ ୨୦୦୦ ପାକିସ୍ତାନୀ ସୈନ୍ୟ ବନ୍ଧୁକ ଓ ମେସିନଗନରେ ସୁସଜ୍ଜିତ ହୋଇ ''ଗଢ଼ି ହବିବୁଲ୍ଲା'' ସୀମାନ୍ତକୁ ଅତିକ୍ରମ କଲେ ଏବଂ ମୁଜାଫରବାଦକୁ ଆକ୍ରମଣ କରିଥିଲେ । ୪-କାଶ୍ମୀର ଇନ୍‌ଫାଣ୍ଟ୍ରିର କିଛି ସୈନ୍ୟ ମଧ୍ୟ ଆକ୍ରମଣକାରୀଙ୍କ ସହ ମିଶି ସମସ୍ତ ତଥ୍ୟ ସେମାନଙ୍କୁ ଦେଇଦେଲେ । ଫଳତଃ, ମୁଜାଫରବାଦକୁ ପାକିସ୍ତାନୀ ସେନା ଅତି ସହଜରେ ଅକ୍ତିଆର କରିନେଲେ । ଏହା ପରେ ଜାମ୍ମୁକାଶ୍ମୀରର ତତ୍‌କାଳୀନ ମହାରାଜାଙ୍କ ସୈନ୍ୟମାନଙ୍କୁ ପରାସ୍ତ କରି ''ଡ଼ୋମେଲ''କୁ ଦଖଲ କରାଗଲା । ''ଉରି''ଠାରେ ଜାମ୍ମୁକାଶ୍ମୀର ଟ୍ରୁପ୍‌ର ବ୍ରିଗେଡ଼ିୟର ରାଜେନ୍ଦ୍ର ସିଂ ଅସୀମ ବୀରତ୍ୱର ସହ ଶତ୍ରୁପକ୍ଷର ମୁକାବିଲା କରିଥିଲେ । ଅତି ସାହସିକତାର ସହ ସେ ଶତ୍ରୁପକ୍ଷର ହଜାର ହଜାର ସୈନ୍ୟଙ୍କୁ ୪ ଦିନ ପର୍ଯ୍ୟନ୍ତ ଅଟକାଇ କାଶ୍ମୀର ଉପତ୍ୟକାକୁ ମୁକ୍ତ କରିପାରିଥିଲେ । କିନ୍ତୁ ଅସ୍ତ୍ରଶସ୍ତ୍ର ସରିଯିବାରୁ ସେ ତାଙ୍କ ଦଳ ସହ ''ବାରମୂଳା''କୁ ପଳାଇ ଆସିଲେ ।

ତାପରେ ଆକ୍ରମଣକାରୀମାନେ ''ବାରମୂଳା''କୁ ପ୍ରବେଶ କଲେ ଓ ବହୁତ ନିର୍ଦ୍ଦୋଷ ଲୋକମାନଙ୍କୁ ହତ୍ୟା ଓ ନିରିହା ନାରୀମାନଙ୍କୁ ଧର୍ଷଣ କଲେ । ସେହିବର୍ଷ ଅକ୍ଟୋବର ମାସ ୨୬ ତାରିଖରେ ବାରମୂଳାରେ ଏହି ନୃଶଂସ ଆକ୍ରମଣ ହୋଇଥିଲା । ଆକ୍ରମଣକାରୀମାନେ ଯୁବତୀ ଝିଅ ଓ ଲୁଣ୍ଠିତ ଧନସମ୍ପତ୍ତି ସହିତ ଆକ୍ରମଣର ସ୍ୱାଦ ଚାଖିଲେ ।

ବାରମୂଳାକୁ ଦଖଲ କରିସାରିଲା ପରେ, ଆକ୍ରମଣକାରୀମାନେ ଶ୍ରୀନଗର ଆଡ଼କୁ ମାଡ଼ିଚାଲିଲେ । ବାଟଯାକ ସେମାନେ ପୋଡ଼ାଜଳା ଓ ଲୁଣ୍ଠନ କାର୍ଯ୍ୟରେ ମାତିଥାନ୍ତି । ୧ - ଶିଖ୍‌ରେଜିମେଣ୍ଟର ସୈନ୍ୟମାନେ ସେମାନଙ୍କର ତୀବ୍ର ପ୍ରତିରୋଧ କରୁଥାନ୍ତି । କିନ୍ତୁ ଶତ୍ରୁମାନେ ବେନିୟମ ଓ ଅନୈତିକ ଭାବେ ଯୁଦ୍ଧ କରୁଥାନ୍ତି । ଯାହାହେଉ, ଶତ୍ରୁପକ୍ଷର ଏହି ହୀନ ଉଦ୍ୟମକୁ ଯେ କୌଣସି ମତେ ପଣ୍ଡ କରିବାକୁ

ବ୍ରିଗେଡ଼ିୟର ଏଲ୍.ପି. ସେନ ସେତେବେଳେ ୧୬୧-ଇନ୍‌ଫ୍ୟାଣ୍ଟ୍ରି ବ୍ରିଗେଡ଼କୁ ପରିଚାଳନା କରୁଥାନ୍ତି । ସେ ସ୍ଥିର କଲେ ଯେ, ଗୋଟିଏ ଲଢୁଆ ଜଗୁଆଳୀ ଦଳ ଉତ୍ତର ପଟୁ ଶ୍ରୀନଗର ଆଡ଼କୁ ଆସୁଥିବା ଶତ୍ରୁପକ୍ଷକୁ ଠାବ କରିବେ ଯାହା ଫଳରେ, ଆକ୍ରମଣକାରୀମାନେ ଶ୍ରୀନଗର ବିମାନଘାଟୀକୁ ଦଖଲ କରି ପାରିବେ ନାହିଁ । ତଦନୁଯାୟୀ, ମେଜର ସୋମନାଥ ଶର୍ମାଙ୍କ ନେତୃତ୍ୱରେ ୪-କୋମାୟନର ଦୁଇଟି କମ୍ପାନୀ ପାହାଡ଼ ଉପରେ ଚଢ଼ି ତଳେ ଥିବା ''ବଡ଼ଗାଁଓ'' ଗ୍ରାମକୁ ଅଭିଯାନ ଆରମ୍ଭ କଲେ ।

ମେଜର ଶର୍ମାଙ୍କ ପିତା ମେଜର ଜେନେରାଲ ଏ.ଏନ୍. ଶର୍ମା ଜଣେ ଖ୍ୟାତି ସମ୍ପନ୍ନ ସୈନିକ ଥିଲେ ଏବଂ ଦ୍ୱିତୀୟ ବିଶ୍ୱଯୁଦ୍ଧରେ ସେ ଉଲ୍ଲେଖନୀୟ ସଫଳତା ହାସଲ କରିଥିଲେ । ସେତେବେଳେ ମେଜର ଶର୍ମାଙ୍କର ଡ଼ାହାଣ ହାତଟି ହକି ଖେଳୁ ଖେଳୁ ପଡ଼ିଆରେ ପଡ଼ି ଭାଙ୍ଗିଯାଇଥାଏ ଓ ପ୍ଲାଷ୍ଟର କରାଯାଇଥାଏ । ତାଙ୍କୁ ପ୍ଲାଷ୍ଟର ଖୋଲାଯିବା ପର୍ଯ୍ୟନ୍ତ ଦିଲ୍ଲୀରେ ବିଶ୍ରାମ ନେବା ପାଇଁ ପରାମର୍ଶ ଦିଆଯାଇଥିଲା । କିନ୍ତୁ ସେ ବିଶ୍ରାମ ନେବା ପାଇଁ ମନା କଲେ ଏବଂ ତାଙ୍କ ଦଳର ସୈନିକ ମାନଙ୍କ ସହିତ କାଶ୍ମୀର ଯିବାକୁ ଅଡ଼ି ବସିଲେ । ତାଙ୍କର ଏହି ଦେଶପ୍ରେମ ଯୋଗୁଁ କାଶ୍ମୀର ଯିବା ପାଇଁ ତାଙ୍କୁ ଅନୁମତି ମିଳିଲା ।

ସୈନ୍ୟ ଦଳ ସହିତ ମେଜର ଶର୍ମା ଶତ୍ରୁପକ୍ଷର ଗତିରୋଧ କରିବା ପାଇଁ, ବଡ଼ଗାଁଓ ଅଞ୍ଚଳକୁ ମାଡ଼ି ଚାଲିଲେ । କିଛି ସମୟ ପରେ ମଧ୍ୟ ତାଙ୍କୁ ଆଉ ଏକ କମ୍ପାନୀ ଅନୁସରଣ କଲା । ୧୯୪୭ ମସିହା ନଭେମ୍ବର ମାସ ୩ ତାରିଖ ଦିନ ଆମ ସୈନ୍ୟମାନେ ବଡ଼ଗାଁଓ ନିକଟରେ ତାଙ୍କର ଆସ୍ଥାନ ଜମାଇଲେ । ୧-କୁମାୟନ କମ୍ପାନୀ, କୌଣସି ଶତ୍ରୁଙ୍କୁ ପେଟ୍ରୋଲିଂ ସମୟରେ ନପାଇବାରୁ, ବିମାନଘାଟୀକୁ ଦିନ ଗୋଟାଏ ବେଳକୁ ଫେରିଆସିଲେ । ଅପରାହ୍ନ ୨ଟାରେ ଆଉ ଗୋଟିଏ କମ୍ପାନୀ ମଧ୍ୟ ଫେରିଆସିଲେ । କିନ୍ତୁ ମେଜର ଶର୍ମାଙ୍କୁ ଅପରାହ୍ନ ୩ଟା ପର୍ଯ୍ୟନ୍ତ ସେଠାରେ ରହିବାକୁ ନିର୍ଦ୍ଦେଶ ଦିଆଗଲା ।

ପ୍ରାୟ ଅପରାହ୍ନ ୨.୩୫ରେ ମେଜର ଶର୍ମା ବ୍ରିଗେଡ଼ିୟର ସେନ୍‌ଙ୍କଠାରୁ ବେତାରବାର୍ତ୍ତା ପାଇଲେ ଯେ, ବଡ଼ଗାଁଓ ଗ୍ରାମରେ ଶତ୍ରୁସୈନ୍ୟ ଛଦ୍ମ ବେଶରେ ଲୁଚି ରହିଛନ୍ତି ଓ ତାଙ୍କ ଉପରକୁ ଆକ୍ରମଣ କରିବାକୁ ଯୋଜନା କରୁଛନ୍ତି । ହଠାତ୍ ଆକ୍ରମଣକାରୀମାନେ ଗୁଳିଚାଳନା କଲେ କିନ୍ତୁ ସେ, ସେମାନଙ୍କ ଉପରକୁ ପାଲଟା ଗୁଳି ଚଳାଇ ପାରିଲେ ନାହିଁ । କାରଣ, ଶତ୍ରୁମାନେ, ଗ୍ରାମବାସୀଙ୍କ ସହ ଥିବାରୁ, ଗୁଳି କଲେ, ନିରିହ ଗ୍ରାମବାସୀ, ସ୍ତ୍ରୀ ଓ ପିଲାମାନେ ମୃତାହତ ହେବାର ଆଶଙ୍କା ଥିଲା । ସେ ଦେଖିଲେ, ପ୍ରାୟ ୭୦୦ ଶତ୍ରୁସୈନ୍ୟ, ପଶ୍ଚିମ ଦିଗରୁ ସେମାନଙ୍କ ଆଡ଼କୁ ମାଡ଼ିଆସୁଛନ୍ତି । ଏହି ସମୟରେ ଏକ ପ୍ରଚଣ୍ଡ ବିସ୍ଫୋରଣ ଘଟି ବେତାର ସଂଯୋଗକୁ ଛିନ୍ନ କରିଦେଲା ।

୧ ଶିଖ୍‌ରେଜିମେଣ୍ଟ, ରାସ୍ତା ଅବରୋଧ କରିଥିବାରୁ ଶତ୍ରୁପକ୍ଷ ଏହି ବାଟଦେଇ ଶ୍ରୀନଗର ବିମାନଘାଟୀକୁ ଯିବାକୁ ଚେଷ୍ଟା କରୁଥିଲେ । ସେତେବେଳକୁ ତାଙ୍କ ପାଖରେ ମାତ୍ର ୧୦୦ ଜଣ ସୈନ୍ୟ ଥିଲେ । ଶତ୍ରୁପକ୍ଷ ଗୁଳି ଫୁଟାଇ ମାଡ଼ିଆସୁଥାନ୍ତି । ମେଜର ଶର୍ମା, ପରିସ୍ଥିତିର ଗୁରୁତ୍ୱ ବୁଝିପାରିଲେ । ସେ ତାଙ୍କ ସୈନ୍ୟମାନଙ୍କୁ, ଗୁଳି ଚଳାଇବାକୁ ନିର୍ଦ୍ଦେଶ ଦେଲେ । ଶତ୍ରୁପକ୍ଷର ଗୁଳିମାଡ଼କୁ ବେଖାତିର କରି, ସେ ନିଜ ସୈନ୍ୟମାନଙ୍କୁ ଗୁଳି, ଗୋଳା, ଯୋଗାଇ ଦେଉଥାନ୍ତି ଓ ପ୍ରେରଣା ଦେଉଥାନ୍ତି । ଭୟଙ୍କର ଲଢ଼େଇ ଚାଲିଲା । ଆମ ସୈନ୍ୟମାନେ ପ୍ରାୟ ୬ ଘଣ୍ଟାକାଳ କଡ଼ା ମୁକାବିଲା କରି, ବହୁସଂଖ୍ୟକ ଶତ୍ରୁସୈନ୍ୟଙ୍କୁ ଧରାଶାୟୀ କରିଦେଲେ । ମେଜର ଶର୍ମାଙ୍କ ଡ଼ାହାଣ ହାତ ପ୍ଲାଷ୍ଟର ହୋଇଥିବା ସତ୍ତ୍ୱେ, ସେ ଯୁଦ୍ଧ କରୁଥାନ୍ତି । ହଠାତ୍, ଶତ୍ରୁପକ୍ଷର ଏକ ଗୁଳି କମାଣଗଦା ଉପରେ ପଡ଼ିବାରୁ ଭୟଙ୍କର ବିସ୍ଫୋରଣ ହେଲା ଓ ମେଜର ଶର୍ମା ଚିରଦିନ ପାଇଁ ଆଖିବୁଜି ଦେଲେ । ତାଙ୍କର ବ୍ରିଗେଡ଼ିୟର ସେନ୍‌ଙ୍କୁ ଶେଷ ତାରବାର୍ତ୍ତା ଥିଲା ''ଆଉ ୫୦ ଗଜ ଦୂରରେ ଶତ୍ରୁସୈନ୍ୟମାନେ ଅଛନ୍ତି । ଆମର ବହୁତ ସଂଖ୍ୟକ ସୈନ୍ୟ ଶହୀଦ ହେଲେଣି । ତଥାପି ଆମେ ଯୁଦ୍ଧ ଅବ୍ୟାହତ ରଖିଛୁ । ମୁଁ ମୋର ଶେଷ ଗୁଳି ଫୁଟିବା ପର୍ଯ୍ୟନ୍ତ ଏବଂ ଶେଷ ସୈନ୍ୟ ଥିବା ପର୍ଯ୍ୟନ୍ତ ଏଠାରୁ ଇଞ୍ଚେ ହଟିବି ନାହିଁ ।''

ମେଜର ଶର୍ମାଙ୍କର ଏହି ଅପୂର୍ବ ସାହସିକତା ଯୋଗୁଁ, ଶତ୍ରୁମାନେ, ଶ୍ରୀନଗର ବିମାନଘାଟୀକୁ ଆମ ଉଦ୍ଧାରକାରୀ ସୈନ୍ୟଦଳ ନ ପହଞ୍ଚିବା ପର୍ଯ୍ୟନ୍ତ, ଯାଇ ପାରିନଥିଲେ । ତାଙ୍କ ଯୋଗୁଁ, କାଶ୍ମୀର ଉପତ୍ୟକା ଶତ୍ରୁ କବଳରୁ ରକ୍ଷା ପାଇଗଲା । ଦୀର୍ଘ ୬ ଘଣ୍ଟାକାଳ ଲଢ଼େଇ ଭିତରେ, ଶେଷ ୧ ଘଣ୍ଟାକାଳ, ସେ ଏକା ଲଢ଼େଇ କରି ସଙ୍କଟଜନକ ମୂହୂର୍ତ୍ତରେ ଶତ୍ରୁପକ୍ଷକୁ ଅଟକାଇ ପାରିଥିଲେ । ଆମ ସୈନ୍ୟମାନେ ସେତେବେଳକୁ ବିମାନଘାଟିରେ ପହଞ୍ଚିସାରିଥିଲେ ।

ମେଜର ସୋମନାଥଶର୍ମାଙ୍କର ସାହସିକତା ଓ ମାତୃଭୂମିର ସୁରକ୍ଷା ପାଇଁ ଆତ୍ମତ୍ୟାଗ ଯୋଗୁଁ ତାଙ୍କୁ ୧୯୫୦ ମସିହା ଜାନୁୟାରୀ ମାସ ୨୬ ତାରିଖରେ ଦେଶର ସର୍ବୋଚ୍ଚ ସାହସିକତା ପୁରସ୍କାର ''ପରମବୀର ଚକ୍ର'' ମରଣୋତ୍ତର ଭାବେ ପ୍ରଦାନ କରାଗଲା । ସେ ହେଉଛନ୍ତି ସ୍ୱାଧୀନ ଭାରତର ସର୍ବୋଚ୍ଚ ସାହସିକତା ପୁରସ୍କାର ''ପରମବୀର ଚକ୍ର''ର ପ୍ରଥମ ବିଜେତା ।



# ନାୟକ ଯଦୁନାଥ ସିଂ



୧୯୪୮ ମସିହାରେ ଜାମ୍ମୁକାଶ୍ମୀରଠାରେ ହୋଇଥିବା ପାକିସ୍ତାନ ଆକ୍ରମଣକୁ ଭାରତୀୟ ସେନା ମାନେ କଡ଼ା ମୁକାବିଲା କରୁଥାନ୍ତି । କଟ୍‌ଠାରେ ବିଜୟ ପରେ ବ୍ରିଗେଡ଼ିୟର ଉସମାନ ''କଲାଲ୍'' ଅଞ୍ଚଳରେ ଶତ୍ରୁପକ୍ଷକୁ ସାମ୍ନା କରିବାକୁ ବାହାରିଲେ । କିନ୍ତୁ ହଠାତ୍ ଗୁଇନ୍ଦା ବିଭାଗ ରିପୋର୍ଟ ଦେଲେ ଯେ, ''ନୌସେରା'' ଅଞ୍ଚଳରେ, ଶତ୍ରୁପକ୍ଷ ଆକ୍ରମଣ କରିବାର ସମ୍ଭାବନା ଅଛି । ୧୯୪୮ ମସିହା ଫେବୃୟାରୀ ମାସ ୬ ତାରିଖ ସକାଳ ୬.୪୦ ମିନିଟ୍‌ରେ ସତକୁ ସତ ଶତ୍ରୁସୈନ୍ୟ ନୌସେରାଠାରେ, ଅନ୍ଧକାର ରାତ୍ରିରେ ପ୍ରଚଣ୍ଡ ଆକ୍ରମଣ କଲେ । ଚତୁର୍ଦ୍ଦିଗ ଘନକୁହୁଡ଼ି ଓ କାକରରେ ଆଚ୍ଛନ୍ନ । ନାୟକ ଯଦୁନାଥ ସିଂ ''ରାଜପୁତ ରେଜିମେଣ୍ଟ''ର ପ୍ରଥମ ବାଟାଲିୟନର କମାଣ୍ଡର ଭାବେ, ନେତୃତ୍ୱ ନେଇ ଅତ୍ୟନ୍ତ ସାହସିକତା ସହିତ ଲଢ଼େଇ କରୁଥାନ୍ତି । ଆମର ୪ ଜଣ ସୈନ୍ୟ ଶତ୍ରୁପକ୍ଷର ଆକ୍ରମଣରେ ଆହତ ହୋଇସାରିଲେଣି । କିନ୍ତୁ ନାୟକ ଯଦୁନାଥ ତାଙ୍କର ଅସାମାନ୍ୟ ପାରମ୍ପରିକ ବୀରତ୍ୱ ପ୍ରଦର୍ଶନ କରି, ଆକ୍ରମଣକୁ ପ୍ରତିହତ କଲେ । ପୁନଶ୍ଚ, ଶତ୍ରୁପକ୍ଷର ଦ୍ୱିତୀୟ ଥର ଆକ୍ରମଣରେ ତାଙ୍କ ୟୁନିଟ୍‌ର ସମସ୍ତେ ସେତେବେଳକୁ ଆହତ ହୋଇଗଲେଣି । କିନ୍ତୁ ତାଙ୍କର ବିଚକ୍ଷଣ ଓ ତୀବ୍ର ଗୁଳିମାଡ଼ରେ, ଶତ୍ରୁପକ୍ଷ ପଛେଇବାକୁ ବାଧ୍ୟ ହେଲେ ଓ ବହୁସଂଖ୍ୟକ ଶତ୍ରୁସୈନ୍ୟ ମୃତାହତ ହେଲେ । ଆଶ୍ଚର୍ଯ୍ୟର କଥା, ଦୁର୍ବଳ ହୋଇ ମଧ୍ୟ ପୁଣି ତୃତୀୟ ଥର ସେମାନେ ଆକ୍ରମଣ କଲେ । ଏହା ଅତ୍ୟନ୍ତ ଭୟଙ୍କର ଥିଲା । ସେତେବେଳକୁ ନାୟକଙ୍କ ଉପରେ ଗୁଳିମାଡ଼ ହୋଇଯାଇଥାଏ । ସେ ଏକାକୀ ନିଜେ ଷ୍ଟେନ୍‌ଗନରୁ ଶତ୍ରୁମାନଙ୍କୁ ପ୍ରଚଣ୍ଡ ଗୁଳିମାଡ଼ କଲେ । ଶତ୍ରୁପକ୍ଷ ଛିନ୍ନଛତ୍ର ହୋଇ ଗଲେ । ଗୋଟିଏ ନିଶ୍ଚିତ ପରାଜୟକୁ ନାୟକ ଯଦୁନାଥ ବୀରତ୍ୱପୂର୍ଣ୍ଣ ବିଜୟରେ ପରିଣତ କଲେ । ଏହିପରି ପ୍ରାୟ ଦୁଇଘଣ୍ଟା କାଳ ଏକାକୀ ଯୁଦ୍ଧ କରୁଥିଲା ବେଳେ ଶତ୍ରୁପକ୍ଷର ଦୁଇଟି ଗୁଳି ତାଙ୍କର ମୁଣ୍ଡ ଓ ଛାତିକୁ ବିଦ୍ଧ କଲା । ସେଇଠି ସେ ଟଳି ପଡ଼ିଲେ । ନୌସେରା ଶତ୍ରୁ କବଳରୁ ରକ୍ଷା ପାଇଗଲା ।

ନାୟକ ଯଦୁନାଥ ଉତ୍ତର ପ୍ରଦେଶର ଶାହାଜାହାନପୁର ଜିଲ୍ଲା ଅନ୍ତର୍ଗତ ଖଜୁରୀ ଗ୍ରାମର ଜଣେ କୃଷକ ଶ୍ରୀ ବୀରବଲ୍ଲ ସିଂଙ୍କ ପୁତ୍ର । ଦେଶମାତୃକାର ସେବାପାଇଁ ଏହି ରାଜପୁତ ବୀର ସର୍ବୋଚ୍ଚ ସାହସିକତା ଓ ଆତ୍ମତ୍ୟାଗର ପ୍ରମାଣ ଦେଇ ଥିବାରୁ ତାଙ୍କୁ ଦେଶର ସର୍ବୋଚ୍ଚ ସାହସିକତା ସମ୍ମାନ **''ପରମବୀର ଚକ୍ର''** ପୁରସ୍କାର ମରଣୋତ୍ତର ଭାବେ ପ୍ରଦାନ କରାଯାଇଥିଲା ।

## ସେକେଣ୍ଡ ଲେଫ୍‌ଟ୍‌ନାଣ୍ଟ ରାମ ରାଘବ ରାଣେ



୧୯୪୮ ମସିହା ମାର୍ଚ୍ଚମାସରେ ''ଝାଙ୍ଗର''କୁ ଶତ୍ରୁ କବଳରୁ ମୁକୁଳେଇବା ପରେ ଭାରତୀୟ ସେନାବାହିନୀ, ''ନୌସେରା''ଠାରୁ ''ରାଜୌରୀ''କୁ ଯିବା ପାଇଁ ଯୋଜନା କରୁଥାନ୍ତି । ଏହା ନୌସେରାଠାରୁ ୪୮ କି.ମି. ଉତ୍ତର ପଶ୍ଚିମ ଦିଗରେ ଅବସ୍ଥିତ । ସେତେବେଳେ ''ଚିଙ୍ଗା-ରାଜୌରୀ'' ଅଞ୍ଚଳରେ ଶତ୍ରୁପକ୍ଷର ବର୍ବରୋଚିତ ଆକ୍ରମଣର ଖବର ପାଇ ଆମ ସୈନ୍ୟବାହିନୀ ଚିଙ୍ଗାକୁ ଯିବାକୁ ସ୍ଥିର କଲେ । ''ଡ଼ୋଗ୍ରା''ର ୪ର୍ଥ ବାଟାଲିୟନ ନୌସେରା ଠାରୁ ଭିତରକୁ ୧୧ କି.ମି. ଦୂରରେ ଥିବା ''ବରୱାଲିରିଜ୍''କୁ ଦଖଲ କଲେ । ଭାରତୀୟ ସେନା ଆଗକୁ ଆଗକୁ ମାଡ଼ିଚାଲିଲେ । ଦୁର୍ଗମ ପାର୍ବତ୍ୟ ଅଞ୍ଚଳ । ଶତ୍ରୁପକ୍ଷଙ୍କ ରାସ୍ତା ଅବରୋଧ ଓ ଭୂମିତଳ ପ୍ରୋଥିତ ବୋମା ଆମ ସୈନ୍ୟଙ୍କ ଗତିରୋଧ କଲା । ଏପରିକି କମାଣଟ୍ୟାଙ୍କ ମଧ୍ୟ ଏହାକୁ ଅତିକ୍ରମ କରି, ଯାଇପାରିଲା ନାହିଁ । ଏତିକିବେଳେ ସେକେଣ୍ଡ ଲେଫ୍‌ଟ୍‌ନାଣ୍ଟ ରାଣେ ଚମତ୍କାର କାରିଗରୀ କୌଶଳ ପ୍ରୟୋଗ କରି, ରାସ୍ତା ଅବରୋଧକୁ ପରିଷ୍କାର କରିଦେଲେ । ଶତ୍ରୁପକ୍ଷର ଗୁଳିମାଡ଼ରେ ଆମର ଦୁଇଜଣ ସୈନ୍ୟ ଓ ରାଣେଙ୍କୁ ମିଶାଇ ୫ ଜଣ ଆହତ ହୋଇଗଲେଣି । ତଥାପି ରାଣେ, ସଂନ୍ଧ୍ୟା ସୁଦ୍ଧା ରାସ୍ତା ପରିଷ୍କାର କରିଦେଲେ । ଫଳରେ, ଆମ ଟ୍ୟାଙ୍କ ଗୁଡିକ ଆଗେଇ ଚାଲିଲା । କିନ୍ତୁ ଶତ୍ରୁପକ୍ଷ ଆଖପାଖରେ ଲୁଚି ରହି, ପ୍ରତିବନ୍ଧକ ସୃଷ୍ଟି କରୁଥାନ୍ତି । ରାଣେ, ରାତିସାରା ଉଜାଗର ରହି ଟ୍ୟାଙ୍କ ଗୁଡ଼ିକର ସୁରକ୍ଷା କରୁଥାନ୍ତି । ଦୀର୍ଘ ୪୮ ଘଣ୍ଟା କାଳ ଅବିଶ୍ରାନ୍ତ ପରିଶ୍ରମ ପରେ, ସେ ଏପ୍ରିଲ ୧୦ ତାରିଖରେ ପାଞ୍ଚୋଟି ରାସ୍ତା ଅବରୋଧ କରୁଥିବା ପାଇନ ବୃକ୍ଷ, ଭୂମିତଳ ବୋମା ଓ ବିସ୍ଫୋରକରେ ଆବୃତ୍ତ ରାସ୍ତା ପ୍ରତିରୋଧକୁ ପୂରାପୂରି ସଫା କରିଦେଲେ । ଆମ ସୈନ୍ୟବାହିନୀ ପୁଣି ୧୩ କି.ମି. ଆଗକୁ ମାଡ଼ି ଗଲେ । କିନ୍ତୁ ଦୁର୍ଭାଗ୍ୟକୁ ପୁଣି ରାସ୍ତା ଅବରୋଧ । ରାଣେ ଗୋଟିଏ ଟ୍ୟାଙ୍କକୁ ନିଜେ ଚାଳନା କରି, ଭୂମିତଳ ବୋମାଗୁଡ଼ିକୁ ସଫା କରି ଯାଉଥାନ୍ତି । ଏହିପରି ଆମ ସେନା ଅତି ଆବଶ୍ୟକ ମୁହୂର୍ତ୍ତରେ ରାଜୌରୀରେ ପହଞ୍ଚି ଗଲେ । ଚିଙ୍ଗା ସେତେବେଳକୁ ଜଳୁଥାଏ । ଶତ୍ରୁପକ୍ଷ ଦ୍ୱାରା ନିହତ ନିରିହ ଲୋକମାନଙ୍କ ଶବରେ ୪୫ ବର୍ଗମିଟର କ୍ଷେତ୍ରଫଳ ୪.୫ ମି.ଗଭୀରତା ବିଶିଷ୍ଟ ତିନୋଟି ଖାତପୂର୍ଣ୍ଣ ହୋଇଯାଇଥିଲା । ତିନିଶହ ଶରଣାର୍ଥୀଙ୍କୁ ଗୁଳିକରିବା ପାଇଁ ଟଙ୍ଗେଇ ଦିଆଯାଇଥିଲା । ସୌଭାଗ୍ୟବଶତଃ ଆମ ସୈନ୍ୟବାହିନୀ ଠିକଣା ସମୟରେ ସେଠାରେ ପହଞ୍ଚି ଯିବାରୁ ସେମାନେ ରକ୍ଷା ପାଇଗଲେ । ସହରଟି ଶ୍ମଶାନରେ ପରିଣତ ହୋଇଯାଇଥିଲା । ଶତ୍ରୁପକ୍ଷର ପ୍ରାୟ ୫୦୦ ସୈନ୍ୟକୁ ଆମ ସେନାବାହିନୀ ମାରିପକାଇଲେ ।

୧୯୧୮ ମସିହା ଜୁନ୍‌ମାସ ୨ ତାରିଖରେ ମହାରାଷ୍ଟ୍ରର ଧରୱାର ଜିଲ୍ଲାର ''ହାବେରୋଡ଼''ଠାରେ ଜନ୍ମ ଗ୍ରହଣ କରିଥିବା ସେକେଣ୍ଡ ଲେଫ୍‌ଟନାଣ୍ଟ ରାମ ରାଘବ ରାଣେଙ୍କୁ ତାଙ୍କର ଅସାମାନ୍ୟ ବୀରତ୍ୱ, ନିଃସ୍ୱାର୍ଥପର କର୍ତ୍ତବ୍ୟନିଷ୍ଠା ଓ କାର୍ଯ୍ୟ ସମ୍ପୂର୍ଣ୍ଣ କରିବାରେ ଦୃଢ଼ ସଂକଳ୍ପ ଯୋଗୁଁ ''ପରମବୀର ଚକ୍ର'' ପୁରସ୍କାର ପ୍ରଦାନ କରାଗଲା ।

# କମ୍ପାନୀ ହାବିଲ୍‌ଦାର ମେଜର ପୀରୁ ସିଂ



୧୯୪୮ ମସିହା ଜୁଲାଇ ମାସରେ ଭାରତୀୟ ସେନା ବାହିନୀ ''ତିଥ୍‌ୱାଲ''କୁ ଅଗ୍ରସର ହେଉଥିବା ବେଳେ, ଜାଣିବାକୁ ପାଇଲେ ଯେ ଶତ୍ରୁସେନା ଗୋଟିଏ ପର୍ବତକୁ ଦଖଲ କରିଛନ୍ତି । ତାର ଟିକିଏ ଆଗକୁ, ଆଉ ଦଳେ ଆସ୍ଥାନ ଜମେଇ ଦେଇଛନ୍ତି । ଏହି ଦୁଇ ଯାଗାରେ ଶତ୍ରୁମାନେ ବଙ୍କର ଖୋଳି ଲୁଚିରହିଥାନ୍ତି । ୬-ରାଜପୂତନା ରାଇଫଲ୍‌ସ୍‌କୁ ଏହି ଦୁଇ ଶତ୍ରୁଦଳକୁ ଦମନ କରିବା ପାଇଁ ଦାୟିତ୍ୱ ଦିଆଯାଇଥାଏ । D କମ୍ପାନୀକୁ ପ୍ରଥମ ଶତ୍ରୁଦଳ ଓ C କମ୍ପାନୀକୁ ଦ୍ୱିତୀୟ ଶତ୍ରୁଦଳକୁ ଦମନ କରିବା ଦାୟିତ୍ୱ ନ୍ୟସ୍ତ ହୋଇଥାଏ ।

D କମ୍ପାନୀ, ଜୁଲାଇ ମାସ ୧୮ ତାରିଖରେ ରାତି ଘ୧.୩୦ ମିନିଟ୍‌ରେ ଆକ୍ରମଣ ଆରମ୍ଭ କରିଦେଲେ । ଅତ୍ୟନ୍ତ ସଂକୀର୍ଣ୍ଣ ପଥ ଦେଇ, ସେମାନେ ଆଗେଇ ଚାଲିଥାନ୍ତି । ଭୟଙ୍କର କମାଣ ଗର୍ଜନ ଓ ଶତ୍ରୁପକ୍ଷର ସ୍ୱୟଂଚାଳିତ ବନ୍ଧୁକରୁ ନିର୍ଗତ ଗୁଳିର ଆବାଜ ସେ ଅଞ୍ଚଳକୁ ଥରାଇ ଦେଉଥାଏ । ମାତ୍ର ଅଧଘଣ୍ଟାଏ ମଧ୍ୟରେ ''D-କମ୍ପାନୀ''ର ୫୧ ଜଣ ଗୁରୁତର ଆହତ ହୋଇପଡ଼ିଲେ । ଏହି ସଂକଟ ସମୟରେ ମେଜର ପୀରୁ ସିଂ ଆଗକୁ ମାଡ଼ି ଚାଲିଲେ । ଶତ୍ରୁ ପକ୍ଷର ସ୍ୱୟଂଚାଳିତ ମେସିନ୍‌ଗନ୍ ପୋଷ୍ଟକୁ ଅକ୍ତିଆର କରିବା ପାଇଁ, ସେ ଧସେଇ ଚାଲିଲେ । ଶତ୍ରୁପକ୍ଷ ଭୟଙ୍କର ଆକ୍ରମଣ କରି ଆମ ସୈନ୍ୟମାନଙ୍କୁ କ୍ଷତବିକ୍ଷତ କରୁଥାନ୍ତି । ତଥାପି ସେ ''ରାଜା ରାମଚ଼ନ୍ଦ୍ର କି ଜୟ'' କହି ତାଙ୍କ ଷ୍ଟେନ୍‌ଗନ୍‌ରୁ ଗୁଳି ବର୍ଷଣ କରି କରି ଆଗେଇ ଚାଲିଥାନ୍ତି । ହଠାତ୍ ସେ ଶତ୍ରୁପକ୍ଷର ଏମ୍.ଏମ୍.ଜି. ମେସିନ୍‌ଗନ୍‌କୁ ଚାଳନା କରୁଥିବା ସୈନିକମାନଙ୍କ ଉପରକୁ ଡ଼େଇଁପଡ଼ି ସେମାନଙ୍କୁ ବାୟୋନେଟରେ ଭୁଷି ହତ୍ୟା କରି ଦେଲେ । ଶତ୍ରୁପକ୍ଷର ମେସିନ୍‌ଗନ୍‌ଟି ନୀରବ ହୋଇଗଲା । ସେତେବେଳକୁ ସେ ଏକା ଜୀବିତ । ତାଙ୍କର ସମସ୍ତ ସାଥି ପଛରେ ମୃତ କିମ୍ବା ଆସନ୍ନ ମୃତ୍ୟୁ ଅପେକ୍ଷାରେ ଧରାଶାୟୀ । କେବଳ ତାଙ୍କ ଉପରେ ଶତ୍ରୁ ନିଷ୍କାସନର ଦାୟିତ୍ୱ ନ୍ୟସ୍ତ ଅଛି ବୋଲି ସେ ବୁଝି ପାରିଲେ । ତାଙ୍କ ଶରୀରରୁ ପ୍ରବଳ ରକ୍ତସ୍ରାବ ହେଉଥିବା ସତ୍ତ୍ୱେ, ସେ ଦ୍ୱିତୀୟ ମେସିନ୍‌ଗନ୍‌କୁ ଅଚ଼ଳ କରିବା ପାଇଁ ଆଗକୁ ଚାଲିଲେ । ହଠାତ୍, ଶତ୍ରୁପକ୍ଷର ଏକ ଗ୍ରିନେଡ୍ ତାଙ୍କ ମୁଣ୍ଡରେ ବାଜିବାରୁ ପ୍ରବଳ ରକ୍ତସ୍ରାବ ହେଲା । ସେ ଅନ୍ଧପ୍ରାୟ ହୋଇଗଲେ । ତାଙ୍କ ପାଖରେ ଆଉ ଗୁଳି ନଥିଲା । ସେ ଗୁରୁଣ୍ଡି ଗୁରୁଣ୍ଡି ଯାଇ ଚିତ୍କାର କରି ଦୁଇଜଣ ଶତ୍ରୁସେନାଙ୍କ ଉପରକୁ କୁଦିପଡ଼ି ସେମାନଙ୍କୁ ବାୟୋନେଟ୍‌ରେ ଭୁଷି ମାରିଦେଲେ । ଆଉ ଗୋଟିଏ ଟ୍ରେଞ୍ଚକୁ ଗଲାବେଳକୁ ଶତ୍ରୁପକ୍ଷର ଗୁଳି ତାଙ୍କ ମୁଣ୍ଡରେ ବାଜିଲା । ସେ ଟଳି ପଡ଼ିଲେ । କିନ୍ତୁ ସେ ମୃତ୍ୟୁ ପୂର୍ବରୁ ଏକ ଗ୍ରିନେଡ୍ ଶତ୍ରୁପକ୍ଷକୁ ନିକ୍ଷେପ କରିସାରିଥିଲେ ଓ ତାହା ଶତ୍ରୁପକ୍ଷର ଅଶେଷ କ୍ଷତି ଘଟାଇପାରିଥିଲା ।

କମ୍ପାନୀ ହାବିଲ୍‌ଦାର ମେଜର ପୀରୁ ସିଂଙ୍କୁ ତାଙ୍କର ଅସାମାନ୍ୟ ବୀରତ୍ୱ ଓ ଶତ୍ରୁଦମନ କରିବାରେ ଏକାକୀ ସାହସିକତା ପ୍ରଦର୍ଶନ ପାଇଁ ଭାରତର ସର୍ବୋଚ୍ଚ ସାହସିକତା ପୁରସ୍କାର ''ପରମବୀର ଚ଼କ୍ର'' ପ୍ରଦାନ କରାଗଲା । ମାତୃଭୂମିର ସୁରକ୍ଷା ପାଇଁ, ତାଙ୍କର ଏହି ନିଃସ୍ୱାର୍ଥପର ତ୍ୟାଗ ଭାରତୀୟ ସେନାବାହିନୀର ଏକ ବିରଳ ଉଦାହରଣ ।

# ଲାୟନ୍‌ସ୍ ନାୟକ କରମ ସିଂ



୧୯୪୭-୪୮ ମସିହାରେ ଜାମ୍ମୁ କାଶ୍ମୀରଠାରେ ହୋଇଥିବା ପାକିସ୍ତାନୀ ଆକ୍ରମଣର ମୁକାବିଲା ସମୟ । ଆମର ସେନାବାହିନୀ 'ଜୋଜିଲା' ଓ 'କାରଗିଲ୍'କୁ ଯିବା ପାଇଁ ''ଅପରେସନ୍ ବିଶନ୍'' ଯୋଜନା ପ୍ରସ୍ତୁତି କରୁଥିଲା ବେଳେ ଶତ୍ରୁପକ୍ଷ, ଆମର ଏହି ଯୋଜନା ପଣ୍ଡ କରିବାକୁ ''ତିଥ୍‌ୱାଲ'' ଓ ''ଉରି''ଠାରେ ପ୍ରଚଣ୍ଡ ଆକ୍ରମଣ ଆରମ୍ଭ କରିଦେଲେ । ଅନେକ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ହୋଇ ସେମାନେ ଆଗୁଆ ଅଞ୍ଚଳରେ ଥିବା ଭାରତୀୟ ସେନାଙ୍କ ଉପରେ ଆକ୍ରମଣ କଲେ । କିନ୍ତୁ ଆମ ସେନା ତାକୁ ସଫଳତାର ସହ ମୁକାବିଲା କଲେ । ତିଥ୍‌ୱାଲର ଦକ୍ଷିଣରେ ଥିବା ''ରିଚ୍‌ମାରଗିଲ''ଠାରେ ଭୟଙ୍କର ଲଢ଼େଇ ହେଲା ଏବଂ ଏହି ଆକ୍ରମଣରେ ''୧ ଶିଖ୍ ରେଜିମେଣ୍ଟ'' ଶତ୍ରୁ ପ୍ରତିରୋଧ କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ୧୯୪୮ ମସିହା ଅକ୍ଟୋବର ମାସ ୧୩ ତାରିଖରେ ଏହି ଭୟଙ୍କର ମୁହାଁମୁହିଁ ସଂଘର୍ଷ ହୋଇଥିଲା ।

ଲାୟନ୍‌ସ୍ ନାୟକ କରମ ସିଂଙ୍କର ଦଳ ଉପରକୁ ଶତ୍ରୁ ସୈନ୍ୟଙ୍କ ଆକ୍ରମଣର ପ୍ରଥମ ଲକ୍ଷ୍ୟ ଥିଲା । ଏହି ଭୟଙ୍କର ଆକ୍ରମଣରେ କରମ ସିଂଙ୍କ ଦଶ ଜଣିଆ ଦଳରୁ ଆଉ ଜଣେ ମାତ୍ର ବାକି ଥିଲେ । ସେ ହେଉଛନ୍ତି କରମ ସିଂହ । ଅସୀମ ବୀରତ୍ୱର ସହ ସେ ବହୁସମୟ ଧରି ଶତ୍ରୁ ପକ୍ଷର ଆକ୍ରମଣକୁ ପ୍ରତିହତ କରି ପାରି ଥିଲେ । ସେତେବେଳକୁ ସେ ଏକାକୀ । ଗୋଳାବାରୁଦ ସବୁ ସରିଆସୁଥାଏ । କରମ ସିଂ ଏ ପରିସ୍ଥିତିରେ, ମୁଖ୍ୟ କମ୍ପାନୀ ସହ ଯୋଗଦେବାକୁ ସ୍ଥିର କଲେ । କାରଣ ସେ ବୁଝି ପାରିଲେ, ତାଙ୍କୁ ସାହାଯ୍ୟ କରିବାକୁ ଆଉ କେହି ନାହାନ୍ତି । ଗୁରୁତର ଭାବେ କ୍ଷତ ବିକ୍ଷତ ହୋଇ ମଧ୍ୟ ସେ, ତାଙ୍କ ଆହତ ସୈନିକମାନଙ୍କୁ ଉଦ୍ଧାର କରୁଥାନ୍ତି । ଚାରିପଟେ ଶତ୍ରୁର ଗୁଳି । ବାହାରୁ କୌଣସି ସାହାଯ୍ୟର ଆଶା ନାହିଁ । ଏସବୁକୁ ହେୟଜ୍ଞାନ କରି ସେ ଗୁରୁଣ୍ଡି ଗୁରୁଣ୍ଡି ତାଙ୍କ ସୈନ୍ୟମାନଙ୍କ ପାଖକୁ ଯାଉଥାନ୍ତି ଓ ସେମାନଙ୍କୁ ଲଢ଼େଇ ଚାଲୁ ରଖିବାକୁ ଉତ୍ସାହିତ କରୁଥାନ୍ତି । ଏଥି ସହିତ ଗ୍ରିନେଡ୍‌ରେ ଶତ୍ରୁ ସହିତ ଯୁଦ୍ଧ ମଧ୍ୟ କରୁଥାନ୍ତି । ହଠାତ୍, ଶତ୍ରୁପକ୍ଷର ଦୁଇଜଣ ସୈନ୍ୟ ତାଙ୍କ ପାଖକୁ ମାଡ଼ିଆସିଲେ । କରମ ସିଂ କୁଦା ମାରି ତାଙ୍କ ଉପରକୁ ଡ଼େଇଁ ପଡ଼ି ଆଖି ପିଛୁଳାକେ, ବାୟୋନେଟ୍‌ରେ ଦୁଇଜଣଙ୍କୁ ଭୁଷି ମାରିଦେଲେ । ଶତ୍ରୁପକ୍ଷ ଭାଙ୍ଗିପଡ଼ିଲେ ଓ ଆକ୍ରମଣରୁ ବିରତ ରହିଲେ । ଏହିପରି ଶତ୍ରୁପକ୍ଷ ଲଗାତାର ୮ଥର ଆକ୍ରମଣ କରିଥିଲେ କିନ୍ତୁ ପ୍ରତିଥର ଏହା ଶିଖ୍‌ମାନଙ୍କ ଦ୍ୱାରା ପ୍ରତିହତ ହେଲା । ଶତ୍ରୁପକ୍ଷ ଏହି ଯୁଦ୍ଧରେ ପ୍ରାୟ ୩୦୦୦ ଗୋଳା ଫୁଟାଇ ଥିଲେ ଏବଂ ତିଥ୍‌ୱାଲ କୁ ଦଖଲ କରି ଏହି ସୀମାନ୍ତ ଘାଟିଟିକୁ ପାକିସ୍ତାନକୁ ଉପହାର ଦେବାକୁ ପଣ ରଖିଥିଲେ । କିନ୍ତୁ ତାହା ବୃଥା ହେଲା ।

କରମ ସିଂଙ୍କର ଏହି ବୀରତ୍ୱପୂର୍ଣ୍ଣ ଆକ୍ରମଣ ଭାରତୀୟ ସେନାବାହିନୀର ଅନ୍ୟ ଦଳମାନଙ୍କୁ ଉତ୍ସାହିତ କରିଥିଲା । ତାଙ୍କର ଏହି ଅସମାନ୍ୟ ସାହସିକତା ଓ ବଳିଷ୍ଠ ନେତୃତ୍ୱ ତାଙ୍କ ପାଇଁ ସୁଖ୍ୟାତିର ମନ୍ଦିର ସୃଷ୍ଟି କରିଥିଲା । ଲୁଧିଆନା ଜିଲ୍ଲାର ମୋହନ ଗ୍ରାମରେ ଜନ୍ମଗ୍ରହଣ କରିଥିବା ଏହି ବୀରଙ୍କୁ ଦେଶର ସର୍ବୋଚ୍ଚ ସାହସିକତା ପୁରସ୍କାର ''ପରମବୀର ଚକ୍ର'' ପ୍ରଦାନ କରାଯାଇଥିଲା । ସେ ତାଙ୍କ ସାଥି ସୈନିକଙ୍କ ପାଇଁ ପ୍ରେରଣାର ଉତ୍ସ ଓ ଶତ୍ରୁମାନଙ୍କ ପାଇଁ ଅତ୍ୟନ୍ତ ଭୟଙ୍କର ଥିଲେ ।



# ଦରିଆ ପାରି କଙ୍ଗୋ ଅଭିଯାନ : ୧୯୬୦ - ୬୩

## କ୍ୟାପଟେନ ଗୁରୁବଚନ ସିଂ ସାଲାରିଆ



୧୯୬୦-୧୯୬୩ ମସିହାର ''ଦରିଆପାରି କଙ୍ଗୋ ଅଭିଯାନ'' ସମୟ। ଜାତିସଂଘର ଅନୁରୋଧରେ, ଭାରତ ସମେତ ୨୩ଟି ବିଦେଶୀ ରାଷ୍ଟ୍ର, କଙ୍ଗୋର ଶାନ୍ତିରକ୍ଷା, କଙ୍ଗୋରୁ ବେଲଜିୟମ ସୈନ୍ୟଙ୍କ ପ୍ରତ୍ୟାହାର ପାଇଁ ସେମାନଙ୍କ ସାମରିକ ଦଳ ସେଠାକୁ ପଠାଇଥିଲେ। ଭାରତର ଅବଦାନ ଏହି ଅଭିଯାନରେ ସବୁଠାରୁ ଅଧିକ ଥିଲା। ପ୍ରାୟ ୫୬୧୩ ଜଣ ସାମରିକ କର୍ମଚାରୀ ଭାରତର ଏହି ଅଭିଯାନରେ ଯୋଗ ଦେଇଥିଲେ।

୧୯୬୧ ମସିହା ଡ଼ିସେମ୍ବର ମାସ ଆରମ୍ଭ ବେଳ। କଟାଙ୍ଗୀ ସୈନ୍ୟମାନେ ଭାରତୀୟ ସୈନ୍ୟମାନଙ୍କ ବିରୁଦ୍ଧରେ ଆକ୍ରମଣ ଆରମ୍ଭ କରିଦେଲେ। ଡ଼ିସେମ୍ବର ୨ ତାରିଖରେ କେତେକ ''ଜେଣ୍ଡରମେରୀ'' ସୈନ୍ୟ, ''କଟାଙ୍ଗ'' ପୋଲିସଙ୍କ ସହ ମିଶି ମଦ୍ୟପାନ କରି ଭାରତୀୟ ସୈନ୍ୟଙ୍କ ଉପରକୁ ପ୍ରଚ଼ଣ୍ଡ ଗୁଳି ମାଡ଼ କଲେ। ଏହାକୁ ଭାରତୀୟ ''ଡ଼ୋଗ୍ରା ରେଜିମେଣ୍ଟ'' ପ୍ରତିହତ କରି ସେମାନଙ୍କୁ ନିରସ୍ତ୍ର କରିଦେଲେ। ସେହିଦିନ ପ୍ରାୟ ୬୦ ଜଣ କଟାଙ୍ଗୀ ସୈନିକ, ୩/୧ ଗୋର୍ଖା ରାଇଫଲ୍ସର ସୈନ୍ୟମାନେ ଏକ ଟନେଲ୍‌କୁ ଅତିକ୍ରମ କରୁଥିଲାବେଳେ, ସେମାନଙ୍କ ଉପରକୁ ଗୁଳିମାଡ଼ କରିଥିଲେ। ତାପର ଦିନ, ସେମାନେ ଜାତିସଂଘର ୧୧ ଜଣ କର୍ମଚାରୀଙ୍କ ଉପରେ ଆକ୍ରମଣ କରି, ଏକ ହେଲିକ୍ୟାପଟର୍‌କୁ ଗୁଳିକରି ନଷ୍ଟ କରିଦେଲେ।

ଡ଼ିସେମ୍ବର ୫ ତାରିଖରେ, ୩/୧ ଗୋର୍ଖା ରାଇଫଲର ଏକ କମ୍ପାନୀକୁ ''କଟାଙ୍ଗ'' ମୁଖ୍ୟ କାର୍ଯ୍ୟାଳୟ ଓ ''ଏଲିସାବେଥେଲି'' ବିମାନଘାଟୀ ମଧ୍ୟରେ ଆକ୍ରମଣକାରୀଙ୍କ ଦ୍ୱାରା ରାସ୍ତା ଅବରୋଧକୁ ସଫା କରିବାକୁ ନିର୍ଦ୍ଦେଶ ଦିଆଗଲା। କ୍ୟାପଟେନ ସାଲାରିଆ ଏହାର ନେତୃତ୍ୱ ନେଲେ। ତାଙ୍କୁ ପ୍ରବଳ ପ୍ରତିରୋଧର ମୁକାବିଲା କରିବାକୁ ପଡ଼ିଥିଲା। ମାତ୍ର ୧୬ ଜଣ ସୈନ୍ୟଙ୍କୁ ନେଇ ସେ ଆଗେଉଥିବା ବେଳେ ପ୍ରାୟ ୯୦ ଜଣ ଶତ୍ରୁ ସୈନ୍ୟ ତାଙ୍କ ଉପରକୁ ଗୁଳିମାଡ଼ କଲେ। କ୍ୟାପଟେନ ସାଲାରିଆ, ଆଉ ସମୟ ନଷ୍ଟ ନ କରି ପ୍ରଚ଼ଣ୍ଡ ପ୍ରତିଆକ୍ରମଣ ଆରମ୍ଭ କରିଦେଲେ। ବାୟୋନେଟ, ଖୁର୍କି, ହାତବୋମା ଓ ଏକ ରକେଟ ଲଞ୍ଚ ସହିତ ସେ ଭୟଙ୍କର ଲଢ଼େଇ କରି ପ୍ରାୟ ୩୮ ଜଣ ଶତ୍ରୁସୈନ୍ୟଙ୍କୁ ମାରିପକାଇଲେ ଓ ତାଙ୍କର ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ଦୁଇଟି ଗାଡ଼ିକୁ ମଧ୍ୟ ନଷ୍ଟ କରିଦେଲେ। ଫଳରେ, ଆକ୍ରମଣକାରୀମାନେ ସଂଖ୍ୟାଧିକ ସତ୍ତ୍ୱେ ଭୟଭୀତ ହୋଇ ଛତ୍ରଭଙ୍ଗ ଦେଇ ପଳାୟନ କଲେ। ଦୁର୍ଭାଗ୍ୟବଶତଃ, ହଠାତ୍ ଏହି ଦୁର୍ଦ୍ଧର୍ଷ ବୀରଙ୍କ ବେକରେ ଶତ୍ରୁପକ୍ଷର ଏକ ଗୁଳି ବାଜି ଗଭୀର କ୍ଷତ ସୃଷ୍ଟି କଲା। ପ୍ରଚଣ୍ଡ ରକ୍ତସ୍ରାବ ହେଉଥିଲେ ମଧ୍ୟ, ସେ ବିବ୍ରତ ନ ହୋଇ ଜୀବନର ଶେଷ ମୁହୂର୍ତ୍ତ

ପର୍ଯ୍ୟନ୍ତ ଲଢ଼େଇ ଜାରି ରଖିଲେ । ତାଙ୍କର ଏହି ସାହସିକତା, ଆତ୍ମତ୍ୟାଗ ଓ ନେତୃତ୍ୱ ସାଥି ସୈନ୍ୟମାନଙ୍କୁ ଏତେ ଉତ୍ସାହିତ କଲା ଯେ, ସେମାନେ ଆଗ୍ରହର ସହ ଲଢ଼ି ସଂଖ୍ୟାଧିକ ଆକ୍ରମଣକାରୀଙ୍କୁ ଦମନ କରିବାକୁ ସମର୍ଥ ହୋଇଥିଲେ ।

ଏହି ''କଙ୍ଗୋ ଅଭିଯାନ''ରେ ଭାରତ ପ୍ରମୁଖ ଭୂମିକା ଗ୍ରହଣ କରିଥିବାରୁ ଜାତିସଂଘର ସେକ୍ରେଟାରୀ ଜେନେରାଲ, କଟାଙ୍ଗର ଜାତିସଂଘ ପ୍ରତିନିଧି ଓ କଙ୍ଗୋର ପ୍ରଧାନମନ୍ତ୍ରୀ, ଭାରତୀୟ ସୈନ୍ୟବାହିନୀଙ୍କ ଶୃଙ୍ଖଳା, ବୀରତ୍ୱ ଓ ତ୍ୟାଗକୁ ଭୂୟସୀ ପ୍ରଶଂସା କରିଥିଲେ । ଗୁରୁଦାସପୁର ଜିଲ୍ଲା ଅନ୍ତର୍ଗତ ''ସାକରଗଡ଼'' ଅଞ୍ଚଳର ଶ୍ରୀ ମୁନ୍‌ସୀରାମଙ୍କ ପୁତ୍ର ୨୬ ବର୍ଷର ଯୁବକ କ୍ୟାପଟେନ ଗୁରୁବଚନ ସିଂ ସାଲାରିଆଙ୍କୁ ମାତୃଭୂମିର ସମ୍ମାନକୁ ଅକ୍ଷୁଣ୍ଣ ରଖିବା ଓ କଙ୍ଗୋର ଏକତା ବଜାୟ ରଖିବା ପାଇଁ କରିଥିବା ତ୍ୟାଗ ନିମିତ୍ତ ଦେଶର ସର୍ବୋଚ୍ଚ ସାହସିକତା ପୁରସ୍କାର **''ପରମବୀର ଚକ୍ର''** ମରଣୋତ୍ତର ଭାବେ ପ୍ରଦାନ କରାଗଲା ।



# ଚୀନା ଆକ୍ରମଣ ୧୯୬୨

## ମେଜର ଧାନସିଂ ଥାପ୍ପା



୧୯୬୨ ମସିହା ଅକ୍ଟୋବର-ନଭେମ୍ବର ମାସରେ ଭାରତ ଓ ଚୀନ ମଧ୍ୟରେ ହଠାତ୍ ଯୁଦ୍ଧ ଲାଗିଗଲା । ଚୀନର ଏହି ଅତର୍କିତ ଆକ୍ରମଣ ଭାରତକୁ ଆଶ୍ଚର୍ଯ୍ୟ ଓ ଅପ୍ରସ୍ତୁତ କରିପକାଇଲା । ଏକ ଶାନ୍ତିପ୍ରିୟ ରାଷ୍ଟ୍ର ହିସାବରେ ଭାରତର ପ୍ରତିରକ୍ଷା କ୍ଷେତ୍ରରେ ସ୍ୱଳ୍ପ ବ୍ୟୟ ଓ ଅନ୍ୟାନ୍ୟ ଅର୍ଥନୈତିକ କ୍ଷେତ୍ରରେ ବିପୁଳ ବ୍ୟୟନୀତି ଏହି ଆକ୍ରମଣ ଦ୍ୱାରା ଶକ୍ତ ଧକ୍କା ପାଇଥିଲା । ସେତେବେଳେ ସୀମାନ୍ତର ବରଫାବୃତ ଅଞ୍ଚଳରେ ଯାତାୟାତ ବ୍ୟବସ୍ଥା ଅତ୍ୟନ୍ତ ଶୋଚନୀୟ ଥିଲା ଏବଂ ଭାରତର ଅସ୍ତ୍ରଶସ୍ତ୍ର ବହୁ ପ୍ରାଚୀନ ଓ ପାରମ୍ପରିକ ଧରଣର ଥିଲା । ଅପରପକ୍ଷରେ ଚୀନ ସୈନ୍ୟମାନେ ଅତ୍ୟାଧୁନିକ ଅସ୍ତ୍ରଶସ୍ତ୍ରରେ ସୁସଜ୍ଜିତ ଓ ପାର୍ବତ୍ୟ ଯୁଦ୍ଧ ପାଇଁ ପ୍ରସ୍ତୁତ ହୋଇ ଆସିଥିଲେ ।

୧୯୬୨ ମସିହା ଅକ୍ଟୋବର ମାସ ଶେଷ ଭାଗରେ ୧ମ ବାଟାଲିୟନର ୩ଟି କମ୍ପାନୀକୁ ଏହି ଚୀନା ଆକ୍ରମଣକୁ ପ୍ରତିହତ କରିବା ପାଇଁ ସୀମାନ୍ତ ଘାଟୀ ଗୁଡ଼ିକୁ ପ୍ରେରଣ କରାଯାଇ, ଲଦାଖର ସିରିଜିପ ଉପତ୍ୟକା, ବାଟାଲିୟନ ହେଡ୍‌କ୍ୱାଟର ଓ ପୃଥିବୀର ଉଚ୍ଚତମ ବିମାନଘାଟୀ ''ଚୁଶୁଲ'' ଠାରେ ଅବସ୍ଥାପିତ କରାଗଲା । ଅକ୍ଟୋବର ୨୧ ତାରିଖରେ ଚୀନାମାନେ ଏଇ ଘାଟୀରେ ଅବସ୍ଥାପିତ ଗୋର୍ଖାସୈନ୍ୟମାନଙ୍କ ଉପରେ ପ୍ରଚଣ୍ଡ ଆକ୍ରମଣ କଲେ । ସେଠାରେ ମେଜର ଧାନ ସିଂ ଥାପ୍ପା ଏହି କମ୍ପାନୀର ନେତୃତ୍ୱ ନେଉଥିଲେ । ହଠାତ୍ ବଟାଲିୟନ ହେଡ୍‌କ୍ୱାଟର ସହିତ ଯୋଗାଯୋଗ ଛିନ୍ନ ହୋଇଗଲା । ସକାଳ ୮.୩୦ ମିନିଟ୍ ସୁଦ୍ଧା ସମଗ୍ର ସିରିଜାପ ଅଞ୍ଚଳ ଶତ୍ରୁପକ୍ଷର ଆକ୍ରମଣରେ ଆମର ଅନେକ ସୈନ୍ୟ ମୃତାହତ ହେଲେ ମଧ୍ୟ, ମେଜର ଥାପ୍ପା ଅତ୍ୟନ୍ତ ବୀରତ୍ୱର ସହ ଏହି ଆକ୍ରମଣକୁ ପ୍ରତିହତ କଲେ । ଚୀନାମାନେ ଏଥିରେ ଦବି ନଯାଇ ଦ୍ୱିତୀୟବାର ଆକ୍ରମଣ କଲେ । ଏଥର ମଧ୍ୟ ଭାରତୀୟ ସେନାବାହିନୀ ସାହସିକତାର ସହ ଏହି ଆକ୍ରମଣକୁ ପ୍ରତିହତ କଲେ । ଦୁଇପକ୍ଷର ବିପୁଳ କ୍ଷତି ଘଟିଲା । ଦୁଇଥର ଆକ୍ରମଣର ମୁକାବିଲା କରି ମଧ୍ୟ ମେଜର ଥାପ୍ପା ବିଚଳିତ ନ ହୋଇ ପୁଣି ତୃତୀୟଥର ଶତ୍ରୁପକ୍ଷର ସମ୍ଭାବ୍ୟ ଆକ୍ରମଣର ସମ୍ମୁଖୀନ ହେବାକୁ ପ୍ରେରଣା ଦେଲେ ।

ସତକୁ ସତ, ଚୀନାମାନେ ପୁଣି ଏଥରକ ଟ୍ୟାଙ୍କ ସହ ଆସି ପ୍ରଚଣ୍ଡ ଆକ୍ରମଣ କଲେ । ମେଜର ଥାପ୍ପା ଏଥରକ ମଧ୍ୟ ସ୍ୱଳ୍ପ ସୈନ୍ୟବଳ ସହିତ ଏହି ଆକ୍ରମଣକୁ ସାମନା କଲେ । ଅସ୍ତ୍ରଶସ୍ତ୍ର ସରିଯିବା ପର୍ଯ୍ୟନ୍ତ ଲଢ଼େଇ କରି, ଶେଷରେ ସେ ବୀରତ୍ୱର ସହ ହାତାହାତି ଲଢ଼େଇ କରି ଅନେକ ଶତ୍ରୁସୈନ୍ୟଙ୍କୁ ମାରି ପକାଇଲେ । ଶତ୍ରୁଦ୍ୱାରା ସମ୍ପୂର୍ଣ୍ଣ

କବଳିତ ହେବା ପର୍ଯ୍ୟନ୍ତ ସେ ଲଢ଼େଇ କରି ଆକ୍ରମଣକୁ ପ୍ରତିହତ କରିପାରିଲେ ।

ସ୍ୱର୍ଗତ ପ୍ରେମ ସିଂ ଥାପ୍ପାଙ୍କ ପୁତ୍ର ମେଜର ଧାନ ସିଂ ଥାପ୍ପାଙ୍କୁ ତାଙ୍କର ଏହି ଅସାମାନ୍ୟ ବୀରତ୍ୱ ପାଇଁ ଭାରତର ସର୍ବୋଚ୍ଚ ସାହସିକତା ପୁରସ୍କାର ''ପରମବୀର ଚକ୍ର'' ମରଣୋତ୍ତର ଭାବେ ମିଳିଲା । ସେ ନିଖୋଜ ଥିବାରୁ ତାଙ୍କୁ ମୃତ ବୋଲି ଧରି ନିଆଯାଇଥିଲା, କିନ୍ତୁ ପରେ ସେ ଯୁଦ୍ଧବନ୍ଦୀ ଭାବେ ଚୀନାମାନଙ୍କ କବଳରେ ଥିବାର ଜଣାପଡ଼ିଲା ଏବଂ ସେ ମୁକ୍ତ ହେଲେ ।



# ସୁବେଦାର ଯୋଗୀନ୍ଦର ସିଂ



୧୯୬୨ ମସିହାର ଶେଷଭାଗରେ, ଚୀନା ସୈନ୍ୟମାନେ ଲାଦାଖ ଅଞ୍ଚଳରେ ଥିବା ଭାରତୀୟ ଘାଟି ଗୁଡ଼ିକ ଉପରେ ଆକ୍ରମଣ କରି ''ନେଫା'' ଅଞ୍ଚଳକୁ ମଧ୍ୟ ମାଡ଼ି ଆସିଲେ । ଅକ୍ଟୋବର ୨୦ ତାରିଖରେ ''ସୁବେଦାର ଯୋଗୀନ୍ଦର ସିଂ ୧ମ-ବାଟାଲିୟନର - ୧୧ ପ୍ଲାଟୁନ D କମ୍ପାନୀର ନେତୃତ୍ୱ ନେଇଥିଲେ ଓ ଶତ୍ରୁମାନଙ୍କ ଆକ୍ରମଣର ତୀବ୍ର ପ୍ରତିରୋଧ କଲେ । ତାଙ୍କର ସହାୟତା ପାଇଁ ୭ନଂ ପ୍ଲାଟୁନଙ୍କୁ ସୁବେଦାର ପ୍ରତାପ ସିଂଙ୍କ ନେତୃତ୍ୱରେ ପୁଣି ପଠାଗଲା । ଅକ୍ଟୋବର ୨୩ ତାରିଖ ଭୋର ଘ ୫.୩୦ ମିନିଟ୍‌ରେ ଚୀନାମାନେ ''ବିମ୍‌ଲା''ଠାରେ ପ୍ରଚଣ୍ଡ ଆକ୍ରମଣ କଲେ । କିନ୍ତୁ ଭାରତୀୟ ଶିଖ୍ ପ୍ଲାଟୁନ୍ ଏହାର କଡ଼ା ମୁକାବିଲା କରି ଶତ୍ରୁପକ୍ଷଙ୍କୁ ପଛକୁ ଫେରିଯିବାକୁ ବାଧ କରିଥିଲେ ।

କିନ୍ତୁ ଶତ୍ରୁପକ୍ଷ ଅଳ୍ପ ସମୟ ମଧ୍ୟରେ ଏକାଠି ହୋଇ ପୁଣି ଆକ୍ରମଣ କଲେ । ସେମାନେ ଅତ୍ୟାଧୁନିକ ସ୍ୱୟଂଚାଳିତ ବନ୍ଧୁକ ବ୍ୟବହାର କଲାବେଳକୁ ଆମ ସୈନ୍ୟମାନେ ୩୦୩-ରାଇଫଲରେ ଯୁଦ୍ଧ କରୁଥିଲେ । ଯାହା ହେଉ, ସୁବେଦାର ଯୋଗୀନ୍ଦର ସିଂ ଓ ତାଙ୍କ ଦଳ ଦୃଢ଼ ଭାବେ ଆଗେଇ ଆସୁଥିବା ଶତ୍ରୁମାନଙ୍କୁ ସାହସିକତାର ସହ ସମ୍ମୁଖୀନ ହୋଇଥିଲେ । ଏଥିରେ ତାଙ୍କ ଅଧା ସୈନ୍ୟ ଶହୀଦ ହୋଇଥିଲେ ମଧ୍ୟ, ମନରେ ଅସୀମ ଆଗ୍ରହ ନେଇ ଯୁଦ୍ଧ କରି ସେମାନେ ଶତ୍ରୁ ସୈନ୍ୟଙ୍କୁ ପଛକୁ ହଟିବାକୁ ବାଧ କରିଥିଲେ ।

ଚୀନାମାନେ ପୁଣି ସଂକଳ୍ପବଦ୍ଧ ଭାବେ ଅଧିକ ଶକ୍ତିଶାଳୀ ହୋଇ ତୃତୀୟ ଥର ଆକ୍ରମଣ କଲେ । ସେତେବେଳକୁ ଯୋଗୀନ୍ଦର ସିଂଙ୍କ ଜଙ୍ଘରେ ଗୁଳି ବାଜି ଗଭୀର କ୍ଷତ ସୃଷ୍ଟି ହୋଇଥିଲା । କିନ୍ତୁ ସେ ଯୁଦ୍ଧ କ୍ଷେତ୍ର ଛାଡ଼ିଯିବାକୁ ମଙ୍ଗିଲେ ନାହିଁ । ତାଙ୍କ ପାଖରେ ଅଳ୍ପସଂଖ୍ୟକ ସୈନ୍ୟ ଥିଲେ ମଧ୍ୟ ସେ ମନରୁ ସାହସ ହରାଇ ନଥିଲେ । ନିଜେ ଏକାକୀ ମେସିନ୍‌ଗନ୍ ସାହାଯ୍ୟରେ ଲଢ଼େଇ କରି, ବହୁସଂଖ୍ୟକ ଚୀନାସୈନ୍ୟଙ୍କୁ ମାରିପକାଇଲେ । କିନ୍ତୁ ସେତେବେଳକୁ ଶିଖ୍ ପ୍ଲାଟୁନର ସମସ୍ତ ଗୁଳିଗୋଳା ସରି ଯାଇଥିଲା । ଯେତେବେଳେ ପରିସ୍ଥିତି ଏକାନ୍ତ ଅସହାୟ ହୋଇପଡ଼ିଲା, ସୁବେଦାର ସିଂ ଓ ତାଙ୍କର ସୈନ୍ୟମାନେ ବାୟୋନେଟ୍ ଧରି ''ୱାଃ ଗୁରୁଜୀ କା ଖାଲ୍‌ସା'' ''ୱାଃ ଗୁରୁଜୀ କା ଫତେ'' ବୋଲି ଧ୍ୱନି କରି, ଶତ୍ରୁପକ୍ଷ ଉପରକୁ କୁଦିପଡ଼ି ବାୟୋନେଟ୍‌ରେ ଭୂଷି ଅନେକ ଚୀନା ସୈନ୍ୟଙ୍କୁ ମାରିଦେଲେ । କିନ୍ତୁ ଶତ୍ରୁପକ୍ଷ ବହୁତ ସଂଖ୍ୟକ ହୋଇଥିବାରୁ ସେମାନଙ୍କର ସେଠାରେ ବୀରଗତି ହୋଇଥିଲା ।

ସୁବେଦାର ଯୋଗୀନ୍ଦର ସିଂଙ୍କୁ ମୃତ୍ୟୁର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଲଢ଼େଇ, କର୍ତ୍ତବ୍ୟନିଷ୍ଠା, ଅସୀମ ସାହସିକତା ଓ ପ୍ରେରଣାଦାୟକ ନେତୃତ୍ୱ ପାଇଁ ମରଣୋତ୍ତର ଭାବେ ''ପରମବୀର ଚକ୍ର'' ପୁରସ୍କାର ଦିଆଗଲା ।

# ମେଜର ସୈତାନ ସିଂ



ଲଦାଖର ''ଚୁଶୁଲ'' ଅଞ୍ଚଳରେ ସେହି ବର୍ଷ ନଭେମ୍ବର ମାସ ୧୮ ତାରିଖରେ ଚୀନାମାନେ ପୁଣି ଆକ୍ରମଣ ଆରମ୍ଭ କରିଦେଲେ । ଭୟଙ୍କର ଶୀତରାତି ! ଥଣ୍ଡା କୋହଲା ପବନ ବହୁଥାଏ । ''ରେଜାଙ୍ଗଲା'' ଅଞ୍ଚଳରେ ଶତ୍ରୁମାନେ ମାଡ଼ି ଆସୁଥାନ୍ତି । ଏହା ସମୁଦ୍ର ପତ୍ତନଠାରୁ ୬୦୦୦ ମିଟର ଉଚ୍ଚରେ ଅବସ୍ଥିତ । ୧୩-କୁମାୟନର Cକମ୍ପାନୀର ଲଢୁଆ ସୈନ୍ୟମାନେ ମେଜର ସୈତାନ ସିଂଙ୍କ ନେତୃତ୍ୱରେ ସେଠାରେ ଶତ୍ରୁପକ୍ଷର କଡ଼ାମୁକାବିଲା କରୁଥାନ୍ତି । ପ୍ରବଳ ଥଣ୍ଡାପବନରେ ଗୋଡ଼ହାତ କୋଲ ମାରୁଥିଲେ ବି, ଶତ୍ରୁସହ ଯୁଦ୍ଧ ପାଇଁ ଆମ ସୈନ୍ୟଙ୍କ ଛାତିରେ ପ୍ରଚଣ୍ଡ ଉଷ୍ମତା ଥାଏ । ଭୋର ପ୍ରାୟ ୫ଟା ସମୟରେ ଆମ ସୈନ୍ୟମାନେ ତୀବ୍ର ଗୁଳିଚାଳନା ଆରମ୍ଭ କରିଦେଲେ । ଫଳରେ, ବହୁ ସଂଖ୍ୟକ ଶତ୍ରୁସେନା ସେଠାରେ ମରିଶୋଇଲେ । ଶତ୍ରୁପକ୍ଷ ମଧ୍ୟ ପାଲଟା ଗୁଳିଚାଳନା କଲେ, ମାତ୍ର ତାହା ବ୍ୟର୍ଥ ହେଲା । କାରଣ ଆମ ସୈନ୍ୟମାନେ ବଙ୍କର ଭିତରେ ଥାଇ ଗୁଳି କରୁଥିଲେ । ହଠାତ୍ ଦେଖାଗଲା, ପ୍ରାୟ ୩୦୦ରୁ ୪୦୦ ଚୀନା ସେନା ମାଡ଼ିଆସୁଛନ୍ତି । ଆମ ସୈନ୍ୟମାନେ ପାଖାପାଖି ହେବା ପର୍ଯ୍ୟନ୍ତ ଅପେକ୍ଷା କରି ପ୍ରାୟ, ୯୫ ମିଟର ଦୂରରୁ ଗୁଳିଚାଳନା ଆରମ୍ଭ କରିଦେଲେ ଓ ସେମାନଙ୍କ ଉପରକୁ ଗ୍ରିନେଡ୍ ଫୋପାଡ଼ିଲେ । କିଛିକ୍ଷଣ ଭିତରେ ଶତ୍ରୁପକ୍ଷର ସୈନ୍ୟ ସବୁ ମରିଶୋଇଲେ ।

କିନ୍ତୁ ସମ୍ମୁଖ ଯୁଦ୍ଧରେ ପରାସ୍ତ ହେବାରୁ ଚୀନାମାନେ ପଛପଟୁ ଆକ୍ରମଣ କଲେ । ଏହା ଅତ୍ୟନ୍ତ ତୀବ୍ର ଥିଲା । ଘମାଘୋଟ ଲଢ଼େଇ ହେଲା । ଆମ ସୈନ୍ୟମାନେ ବୀରତ୍ୱ ସହକାରେ ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ଲଢ଼ିଲେ । ଶତ୍ରୁପକ୍ଷର ପ୍ରାୟ ୩ ଟ୍ରକ ସୈନ୍ୟ ସେତେବେଳକୁ ମରି ସାରିଲେଣି । ଆମର ମଧ୍ୟ ବହୁତ ସୈନ୍ୟ ଶହୀଦ ହେଲେଣି । ମେଜର ସୈତାନ ସିଂ ସଫଳତାର ସହ ନେତୃତ୍ୱ ନେଇ ଏହି ଆକ୍ରମଣକୁ ସୁପରିଚାଳନା କରିଥିଲେ । ସେ ଲଢ଼େଇ କରୁ କରୁ ଗୁରୁତର ଆହତ ଅବସ୍ଥାରେ ଦୁଇଜଣ ସୈନ୍ୟଙ୍କ ଦ୍ୱାରା ଟେକାହୋଇ ନିଆଯାଉଥିବା ସମୟରେ, ଶତ୍ରୁପକ୍ଷ ସେମାନଙ୍କ ଉପରକୁ ମେସିନ୍‌ଗନ୍ ଚାଳନା କଲେ । ସେ ତାଙ୍କ ସୈନ୍ୟଙ୍କୁ ତାଙ୍କୁ ଛାଡ଼ି ଯିବାକୁ ନିର୍ଦ୍ଦେଶ ଦେଲେ । କିନ୍ତୁ ସାଥି ସୈନ୍ୟମାନେ ତାଙ୍କୁ ଏପରି ଅବସ୍ଥାରେ ଛାଡ଼ି ନଯିବାରୁ, ସେ ଏହା ତାଙ୍କ ନିର୍ଦ୍ଦେଶ ବୋଲି ସତର୍କ କରାଇଦେଲେ । ଫଳତଃ, ସେମାନେ ତାଙ୍କୁ ଛାଡ଼ି ଯିବାକୁ ବାଧ୍ୟ ହେଲେ ଓ ସେମାନଙ୍କ ଜୀବନ ରକ୍ଷା ହୋଇଥିଲା । କିନ୍ତୁ ମେଜର ସୈତାନ ସିଂ ସେହି ଅବସ୍ଥାରେ ସେଠାରେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

ଲେଫ୍‌ଟ୍‌ନାଣ୍ଟ କର୍ଣ୍ଣେଲ ହେମ ସିଂହଙ୍କ ପୁତ୍ର ମେଜର ସୈତାନ ସିଂଙ୍କୁ ତାଙ୍କର ଏହି ସାହସିକତା, ବଳିଷ୍ଠ ନେତୃତ୍ୱ ଓ ନିଃସ୍ୱାର୍ଥପର ତ୍ୟାଗ ପାଇଁ ଦେଶର ସର୍ବୋଚ୍ଚ ସାହସିକତା ପୁରସ୍କାର ''ପରମବୀର ଚକ୍ର'' ମରଣୋତ୍ତର ଭାବେ ପ୍ରଦାନ କରାଗଲା ।

# ଭାରତ ପାକିସ୍ତାନ ଯୁଦ୍ଧ ୧୯୬୫

## କମ୍ପାନୀ-କ୍ୱାଟର ମାଷ୍ଟର ହାବିଲ୍‌ଦାର ଅବ୍‌ଦୁଲ ହମିଦ୍



୧୯୪୭-୪୮ ମସିହାରେ ସମଗ୍ର ଜାମ୍ମୁକାଶ୍ମୀରକୁ ଦଖଲ କରିବା ପାଇଁ ପାକିସ୍ତାନ ଯେଉଁ ଯୋଜନା କରିଥିଲା ତାହା ପଣ୍ଡ ହେଲା ସତ, କିନ୍ତୁ ଯୁଦ୍ଧବିରତି ଚୁକ୍ତି ଅନୁସାରେ ପ୍ରାୟ ଏକ ତୃତୀୟାଂଶ ଜାମ୍ମୁକାଶ୍ମୀର ଅଞ୍ଚଳ ତା କବଳରେ ରହିଲା । ପୁନଶ୍ଚ ସେ ୧୯୬୫ ମସିହା ଅଗଷ୍ଟମାସରେ ଜାମ୍ମୁକାଶ୍ମୀର ଦଖଲ କରିବା ପାଇଁ ଆକ୍ରମଣ କଲା । ପାକିସ୍ତାନୀ ସେନା ୫୭୨ କି.ମି. ବିଶିଷ୍ଟ ଗୋଳାନିଷିଦ୍ଧ ରେଖା (Ceasefire Line)କୁ ବେନିୟମ ଭାବେ ବିଭିନ୍ନ ସ୍ଥାନରେ ଅତିକ୍ରମ କଲେ । ଭାରତୀୟ ସେନା ସେମାନଙ୍କୁ ନିୟନ୍ତ୍ରଣ ରେଖା ସେପଟକୁ ତଡ଼ି, ୨୬୨୧ ମିଟର ଉଚ୍ଚ ହାଜିପୁର ପାସକୁ ଦଖଲ କରିନେଲେ । ଭାରତ-ପାକିସ୍ତାନ ଯୁଦ୍ଧ ଆରମ୍ଭ ହୋଇଗଲା ଓ ଏହା ୨୨ ଦିନ ଧରି ଚାଲିଲା ।

୧୯୬୫ ମସିହାର ସେପ୍‌ଟେମ୍ବର ମାସ ଦ୍ୱିତୀୟ ସପ୍ତାହ । ୪-ଗ୍ରେନେଡ଼ିୟର ବାଟାଲିୟନଙ୍କୁ ''ଚିମା'' ଗ୍ରାମକୁ ଅଧିକାର କରିବାକୁ ନିର୍ଦ୍ଦେଶ ମିଳିଲା । ଏହି ବାଟାଲିୟନ ସେପ୍ଟେମ୍ବର ୭-୮ ତାରିଖ ସୁଦ୍ଧା ସେଠାରେ ପହଞ୍ଚିଗଲେ । ଶତ୍ରୁପକ୍ଷ ଏହି ଯାଗାଉପରେ ଘନ ଘନ ଆକ୍ରମଣ କଲେ । କିନ୍ତୁ ଆମ ସୈନ୍ୟମାନଙ୍କ ଉଦ୍ଦାମତା ଓ ଏକାଗ୍ର ଲଢ଼େଇ ଶତ୍ରୁପକ୍ଷର ଲକ୍ଷ୍ୟକୁ ପ୍ରତିହତ କଲା । ସେପ୍‌ଟେମ୍ବର ୧୦ ତାରିଖ ସକାଳେ, ଶତ୍ରୁପକ୍ଷ ୭- ପାର୍ବତ୍ୟ ବ୍ରିଗେଡ଼ ହେଡ୍‌କ୍ୱାଟରସ୍ ଓ ୪-ଗ୍ରିନେଡ଼ିୟରଙ୍କର ଉପରକୁ ପ୍ରଚଣ୍ଡ ଗୋଳାବର୍ଷଣ କଲେ । ଶତ୍ରୁପକ୍ଷର ମୁଖ୍ୟ ଟ୍ୟାଙ୍କଟି ''ଚିମା'' ଆଡ଼କୁ ମୁହଁ କରି ଗୋଳାବର୍ଷଣ କରିଚାଲିଲା । ଅନ୍ୟ ଟ୍ୟାଙ୍କ ସବୁ ଉତ୍ତର ପୂର୍ବ ଦିଗରୁ ଆମ ଆଡ଼କୁ ମାଡ଼ିଆସିଲେ । ଏହି ସମୟରେ, CQMH ଅବଦୁଲ ହମିଦ ତାଙ୍କର ଅତୁଳନୀୟ ସାହସ ଓ ନେତୃତ୍ୱ ପ୍ରଦର୍ଶନ କରିଥିଲେ । ସେ ହଠାତ୍ ପରିସ୍ଥିତିର ଗୁରୁତ୍ୱ ଉପଲବ୍‌ଧି କରି ଜିପ ଉପରେ ରହି ଟ୍ୟାଙ୍କ ଉପରକୁ ଗୁଳି ବର୍ଷଣ କଲେ । ଶତ୍ରୁପକ୍ଷର ଭୟଙ୍କର ଗୋଳାବର୍ଷଣ ଓ ଟ୍ୟାଙ୍କ ଫାୟାରକୁ ବେଖାତିର କରି, ଏକ ସୁବିଧାଜନକ ସ୍ଥାନକୁ ଯାଇ, ମୁଖ୍ୟ ଟ୍ୟାଙ୍କ ଉପରକୁ ଗୁଳିମାଡ଼ କଲେ । ଫଳତଃ ମୁଖ୍ୟ ଟ୍ୟାଙ୍କଟି ଅକାମୀ ହୋଇଗଲା । ଆଖି ପିଛୁଳାକେ ସେ ସ୍ଥାନ ପରିବର୍ତ୍ତନ କରି ଆଉ ଗୋଟିଏ ଶତ୍ରୁଟ୍ୟାଙ୍କକୁ ଗୁଳି କରି ଅକାମୀ କରିଦେଲେ । ତାପରେ ଅନ୍ୟ ଏକ ଟ୍ୟାଙ୍କ ଆଡ଼କୁ ଗୁଳି କରିବା ବେଳକୁ ଶତ୍ରୁପକ୍ଷ ତାଙ୍କ ଅବସ୍ଥିତିକୁ ଠାବ କରିସାରିଥିଲେ ଓ ତାଙ୍କ ଉପରକୁ ମେସିନଗନ୍‌ରୁ ଗୁଳି ଓ ମାରାତ୍ମକ ବିସ୍ଫୋରକ ଦ୍ରବ୍ୟ ନିକ୍ଷେପ କଲେ । ତାଙ୍କ ଦେହରେ ତାହା ବାଜିବାରୁ ସେ ସେଠାରେ ଟଳି ପଡ଼ିଲେ ।

ମାତ୍ର ୩୨ ବର୍ଷ ବୟସରେ ଏହି ବୀର ମାତୃଭୂମିକୁ ଶତ୍ରୁ କବଳରୁ ରକ୍ଷା କରିବା ପାଇଁ ନିଜ ଜୀବନକୁ ଉତ୍ସର୍ଗ କରିଯାଇଛନ୍ତି ଓ ତାଙ୍କର ଏହି ସାହସିକ କାର୍ଯ୍ୟ ସାଥି ସୈନ୍ୟମାନଙ୍କୁ ପ୍ରେରଣା ଯୋଗାଇଛି । ଶତ୍ରୁପକ୍ଷର ଅବିଶ୍ରାନ୍ତ ଗୋଳାମାଡ଼ ଚାଲିଥିଲା ବେଳେ ନିଜର ସୁରକ୍ଷାକୁ ଅବହେଳା କରି ତାଙ୍କର ସର୍ବୋତ୍କୃଷ୍ଟ ସାମରିକ କର୍ତ୍ତବ୍ୟ ପାଳନ କରିଥିବାରୁ, ଉତ୍ତର ପ୍ରଦେଶର ଘାଜିପୁର ଜିଲ୍ଲାର ଧାମପୁର ଗ୍ରାମର ଶ୍ରୀ ଉସ୍‌ମାନଙ୍କ ପୁତ୍ର ଅବଦୁଲ ହମିଦ୍‌ଙ୍କୁ ଦେଶର ସର୍ବୋଚ୍ଚ ସାହସିକତା ପୁରସ୍କାର ''ପରମବୀର ଚକ୍ର'' ମରଣୋତ୍ତର ଭାବେ ପ୍ରଦାନ କରାଯାଇଥିଲା ।



# ଲେଫ୍‌ଟ୍‌ନାଣ୍ଟ କର୍ଣ୍ଣେଲ ଏ.ବି. ତାରାପୁରେ



୧୯୬୫ ମସିହା ସେପ୍‌ଟେମ୍ବର ୧୧-୧୮ ତାରିଖ ସିଆଲକୋଟ ଅଞ୍ଚଳର ଫିଲୋରାଠାରେ ସବୁଠାରୁ ବଡ଼ ଟ୍ୟାଙ୍କ ଯୁଦ୍ଧ ଭାରତ - ପାକିସ୍ତାନ ମଧ୍ୟରେ ହୋଇଥିଲା । ପୁନାହର୍ଷ ରେଜିମେଣ୍ଟ ଏଥିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ସେପ୍‌ଟେମ୍ବର ୧୧ ତାରିଖରେ ଏହି ରେଜିମେଣ୍ଟକୁ "ଫିଲୋରା"ର ସୁରକ୍ଷା ଦାୟିତ୍ୱ ଦିଆଯାଇଥିଲା । ଭାରତୀୟ ସେନା, କାଲୋଇ-ଫିଲୋରା ରାସ୍ତାରେ ମାଡ଼ି ଚାଲିଥିଲା ବେଳେ "ଲିବେ୍‌ଟ୍"ଠାରେ ଶତ୍ରୁପକ୍ଷର ସନ୍ଧାନ ପାଇଲେ । ପୁନାହର୍ଷ ସ୍କ୍ୱାର୍ଡ଼ନ ସଙ୍ଗେ ସଙ୍ଗେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରି ଶତ୍ରୁପକ୍ଷର ୩ଟି ଟ୍ୟାଙ୍କକୁ ନଷ୍ଟ କରିଦେଲେ । "ଲିବେ" ସେତେବେଳେ ଶତ୍ରୁ କବଳିତ ଥିଲା । ପୁନାହର୍ଷର କମାଣ୍ଡଣ୍ଟ ଲେ.କ. ତାରାପୁରେ ଶତ୍ରୁପକ୍ଷକୁ ପଛପଟୁ ଅତର୍କିତ ଆକ୍ରମଣ କରିବାକୁ ଯୋଜନା କଲେ । ଉକ୍ତ ଯୋଜନା ଅନୁସାରେ, ୫/୯ ଗୋର୍ଖା ରାଇଫଲ୍‌ସ୍, ଦୁଇଟି ଟ୍ୟାଙ୍କ ସହାୟତାରେ ଲିବେଠାରେ ଶତ୍ରୁପକ୍ଷର ଅବରୋଧ କରିବାକୁ ଆଗଭର ହେଲେ । ଦିନ ୧୨ଟା ବେଳକୁ ଯେତେବେଳେ "ଫିଲୋରା"ଠାରେ ଅତର୍କିତ ଆକ୍ରମଣ ହେଲା, ଶତ୍ରୁପକ୍ଷ ଆଶ୍ଚର୍ଯ୍ୟ ହୋଇଗଲେ କିନ୍ତୁ ସେମାନେ ହଠାତ୍ ହିଂସ୍ରହୋଇ ଆକ୍ରମଣର ପ୍ରତିରୋଧ କଲେ ଓ ବହୁସଂଖ୍ୟକ ଟ୍ୟାଙ୍କ ଦ୍ୱାରା କମାଣ ମାଡ଼ ଓ ଘନଘନ ବିମାନ ଆକ୍ରମଣ ମଧ୍ୟ କଲେ । ଏହି ପ୍ରତିରୋଧ ସତ୍ତ୍ୱେ ଆମର " C ସ୍କ୍ୱାଡ଼୍ରନ" ନିର୍ଭୟରେ ବନ୍ଧୁକ ଧରି ମାଡ଼ି ଚାଲିଥାନ୍ତି । ଏହିପରି ଗୋଟିଏ ଭୟଙ୍କର ଟ୍ୟାଙ୍କ ଯୁଦ୍ଧ ଆରମ୍ଭ ହୋଇଗଲା ।

ଆମର ୯ଟି ଟ୍ୟାଙ୍କ କ୍ଷତିଗ୍ରସ୍ତ ହୋଇଥିବା ବେଳେ ଶତ୍ରୁପକ୍ଷର ୨୯ଟି ଟ୍ୟାଙ୍କ ନଷ୍ଟ ହୋଇଥିଲା । ଶତ୍ରୁପକ୍ଷର ଅସ୍ତ୍ରଶସ୍ତ୍ରକୁ ନଷ୍ଟ କରି ସାରିଲା ପରେ ପୁନାହର୍ଷ, ଗୁର୍ଖା ରାଇଫଲ୍‌ସ୍ ସହ ମିଶି ସେପ୍‌ଟେମ୍ବର ୧୧ ତାରିଖରେ "ଫିଲୋରା"କୁ ଆକ୍ରମଣକାରୀଙ୍କ କବଳରୁ ସୁରକ୍ଷିତ କଲେ । କିନ୍ତୁ ସେହିଦିନ ଓ ତାପରଦିନ ରାତିରେ ଶତ୍ରୁମାନେ ପୁଣି ଘନ ଘନ ଆକ୍ରମଣ କଲେ । ସେପେଟ୍‌ମ୍ବର ୧୨ ତାରିଖ ସକାଳ ହେଲାବେଳକୁ ସେମାନେ ପ୍ରାଣ ବିକଳରେ ଅସ୍ତ୍ରଶସ୍ତ୍ର ଛାଡ଼ି ପଳାୟନ କରିଥିଲେ । ଫିଲୋରା ଯୁଦ୍ଧରେ ପୁନାହର୍ଷ ଦଳ ଅତର୍କିତ ଭାବେ ଶତ୍ରୁ ପକ୍ଷକୁ ପଛପଟୁ ଆକ୍ରମଣ କରି ତାଙ୍କର ଶକ୍ତି ନଷ୍ଟ କରିଦେଇଥିଲେ । ଏହି ଯୁଦ୍ଧରେ ଲେ.କ. ଅଦେର୍ଶୀର ବୁର୍ଜଜୀ ତାରାପୁରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲେ । ଏହି ଯୁଦ୍ଧରେ ଆହତ ହୋଇ ମଧ୍ୟ ସେ ସ୍ଥାନ ଛାଡ଼ି ଯାଇ ନଥିଲେ । ସେପ୍‌ଟେମ୍ବର ୧୪ ତାରିଖରେ ଆହତ ଅବସ୍ଥାରେ ସେ ପୁଣି ଦଳର ନେତୃତ୍ୱ ନେଇ ୱାଜିରୱାଲି, ଜାସୋରାନ ଓ ବୁଟୁରୁ - ଡ଼ୋଗ୍ରାଣ୍ଡିକୁ ଦଖଲ କଲେ । ତାଙ୍କର ନେତୃତ୍ୱରେ ଅନୁପ୍ରାଣିତ ହୋଇ, ଆମ ସେନା ଶତ୍ରୁପକ୍ଷଙ୍କ ଉପରେ ଆକ୍ରମଣ କରି ସେମାନଙ୍କ ୬୦ଟି ଟ୍ୟାଙ୍କକୁ ନଷ୍ଟ କରି ଦେଇଥିଲେ ।

ହାଇଦରାବାଦର ଜଣେ ସରକାରୀ କର୍ମଚାରୀ ଶ୍ରୀ ବି.ପି. ତାରାପୁରେଙ୍କ ପୁତ୍ର ଲେଫ୍‌ଟନାଣ୍ଟ କର୍ଣ୍ଣେଲ ଏ.ବି. ତାରାପୁରେଙ୍କୁ ଶତ୍ରୁସମ୍ମୁଖରେ ବୀରତ୍ୱ ଓ ସାହସିକତା ପ୍ରଦର୍ଶନ ପାଇଁ "ପରମବୀର ଚକ୍ର" ପୁରସ୍କାର ପ୍ରଦାନ କରାଯାଇଥିଲା ।

## ଲାୟନ୍ସ୍ ନାଏକ ଆଲବର୍ଟ ଏକ୍କା



୧୯୬୫ ମସିହା ପରେ ୧୯୭୧ ମସିହାରେ ପୁଣି ଭାରତ ପାକିସ୍ତାନ ଯୁଦ୍ଧ ଲାଗିଲା । ଏହା ମୁଖ୍ୟତଃ ବଙ୍ଗଳାଦେଶର ମୁକ୍ତି ପାଇଁ ହୋଇଥିଲା । ଦୀର୍ଘ ୧୪ ଦିନ ବ୍ୟାପି ଏହି ଯୁଦ୍ଧରେ ପାକିସ୍ତାନ ପରାଜୟ ବରଣ କଲା ଏବଂ ପ୍ରାୟ ୨୦,୦୦୦ ପାକିସ୍ତାନୀ ସୈନ୍ୟଙ୍କୁ ଯୁଦ୍ଧବନ୍ଦୀ କରାଯାଇଥିଲା ଓ ଭାରତୀୟ ସେନାମାନେ ପାକିସ୍ତାନର ବହୁ ଅଞ୍ଚଳ ଦଖଲ କରିଥିଲେ ।

ସେତେବେଳେ ପୂର୍ବାଞ୍ଚଳରେ ଭାରତ ଓ ବାଙ୍ଗଲାଦେଶୀ ସୈନ୍ୟ ଏକତ୍ର ହୋଇ ପାକିସ୍ତାନ ବିପକ୍ଷରେ ଯୁଦ୍ଧ କରୁଥାନ୍ତି ଏବଂ 'ଢ଼ାକା'କୁ ଶତ୍ରୁ କବଳରୁ ମୁକ୍ତ କରିବା ପାଇଁ ଚେଷ୍ଟା କରୁଥାନ୍ତି । ବେଳେବେଳେ ଶତ୍ରୁପକ୍ଷଙ୍କ ସହ ମୁହାଁମୁହିଁ ସଂଘର୍ଷ କରିବାକୁ ପଡୁଥାଏ । ୧୪-ଗାର୍ଡ଼ ବାଟାଲିୟନଙ୍କୁ ଅଗରତାଲା ଠାରୁ ୬.୪ କି.ମି. ପଶ୍ଚିମକୁ ଥିବା ''ଗଙ୍ଗାସାଗର'' ଠାରେ ପାକିସ୍ତାନ ସୈନ୍ୟଙ୍କୁ ମୁକାବିଲା କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଥାଏ । ସମଗ୍ର ଅଞ୍ଚଳଟି ଶତ୍ରୁ ଦ୍ୱାରା କବଳିତ ହୋଇଥାଏ । ପ୍ରାୟ ୫ ଘଣ୍ଟା ମାର୍ଚ୍ଚ କଲାପରେ, ଆମ ସୈନ୍ୟମାନେ ହଠାତ୍ ଡ଼ିସେମ୍ବର ମାସ ଭୋର ୪ଟାରେ ଆକ୍ରମଣ ଆରମ୍ଭ କରିଦେଲେ । ପ୍ରାୟ ସାଢ଼େ ୫ ଘଣ୍ଟା କାଳ ଭୟଙ୍କର ହାତାହାତି ସଂଘର୍ଷ ହେଲା । ଶତ୍ରୁପକ୍ଷଙ୍କ ପ୍ରଚଣ୍ଡ ଗୁଳିମାଡ଼ ଓ ବିମାନ ଆକ୍ରମଣ ସତ୍ତ୍ୱେ ଆମ ସେନାବାହିନୀ ସେମାନଙ୍କୁ ପରାସ୍ତ କଲେ । ଏହି ଆକ୍ରମଣ ବେଳେ ଲାୟନସ୍ ନାଏକ ଆଲବର୍ଟ ଏକ୍କା ବାଟାଲିୟନର ଆଗରେ ଥିଲେ । ସେ ଦେଖିଲେ, ଗୋଟିଏ ଶତ୍ରୁପକ୍ଷର ବଙ୍କର ଭିତରୁ ମେସିନ୍‌ଗନ୍‌କୁ ଚଳାଯାଉଛି ଯାହାକି ତାଙ୍କର ସୈନ୍ୟମାନଙ୍କୁ ମୃତାହତ କରୁଛି । ସାହସୀ ଏକ୍କା ହଠାତ୍ ଆଖିପିଛୁଳାକେ ନିଜକଥା ଚିନ୍ତା ନକରି, ଶତ୍ରୁପକ୍ଷର ବଙ୍କର ପାଖକୁ ଧାଇଁଯାଇ ଦୁଇ ଜଣ ଶତ୍ରୁସୈନ୍ୟଙ୍କୁ ବାୟୋନେଟ୍‌ରେ ଭୁଷି ମାରିଦେଲେ । ମେସିନ୍‌ଗନ୍‌ଟି ନୀରବ ହୋଇଗଲା । ସେ ଗୁରୁତର ଆହତ ହେଲେ ମଧ୍ୟ ସାଥି ସୈନ୍ୟଙ୍କ ସହ ଲଢ଼େଇ କରି ବଙ୍କର ଉପରେ ବଙ୍କର ଅଧିକାର କରିଚାଲିଲେ । ପ୍ରାୟ ୧୬ କି.ମି. ଯିବା ପରେ ହଠାତ୍ ଶତ୍ରୁପକ୍ଷର ଗୋଟିଏ ମେସିନ୍‌ଗନ୍‌ରୁ ନିର୍ଗତ ଗୁଳିମାଡ଼ ସେମାନଙ୍କୁ ଆହତ କରିପକାଇଲା ଓ ସେମାନଙ୍କ ଯାତ୍ରାରେ ବାଧା ସୃଷ୍ଟି କଲା । ପୁନର୍ବାର ଏହି ସାହସୀ ବୀର ସୈନିକ ଜଣକ ନିଜ ସୁରକ୍ଷାକୁ ଭୁଲି ଯାଇ ଗୁରୁତର ଆହତ ଅବସ୍ଥାରେ ଗୋଟିଏ ଗ୍ରିନେଡ୍ ବଙ୍କର ଭିତରକୁ ଫୋପାଡ଼ିଲେ ଯାହା କି ଶତ୍ରୁପକ୍ଷର ଜଣେ ସୈନ୍ୟଙ୍କୁ ମାରିଦେଲା ଓ ଜଣକୁ ଆହତ କଲା । ତାପରେ, ସେ ବଙ୍କର ଭିତରକୁ ପଶି ମେସିନ ଚଳାଉଥିବା ଶତ୍ରୁଙ୍କୁ ବାୟୋନେଟ୍‌ରେ ଭୁଷି ମାରିଦେଲେ । ଶତ୍ରୁପକ୍ଷର ମେସିନ୍‌ଗନ୍‌ଟି ନୀରବ ହୋଇଗଲା ।

ଏକ୍କାଙ୍କର ଏହି ସାହସିକ କାର୍ଯ୍ୟ ନିଶ୍ଚିତ ଭାବେ ତାଙ୍କ କମ୍ପାନୀକୁ ଶତ୍ରୁ ଆକ୍ରମଣରୁ ରକ୍ଷା କରିଥିଲା । କିନ୍ତୁ ସେ ସେତେବେଳକୁ ଗୁରୁତର ଭାବେ ଆହତ ହୋଇଥିଲେ । ତାଙ୍କ ଶରୀରର ଅନେକ ସ୍ଥାନରେ ଗଭୀର କ୍ଷତ ହୋଇଥିଲା ଓ ସେଠାରେ ସେ ବୀରଗତି ପ୍ରାପ୍ତ ହେଲେ ।

ନିଜ ଜୀବନକୁ ବିପନ୍ନ କରି ମାତୃଭୂମିର ସୁରକ୍ଷା ପାଇଁ ତାଙ୍କର ଅପୂର୍ବ ବୀରତ୍ୱ ଓ ପୂର୍ଣ୍ଣ ତ୍ୟାଗ ଯୋଗୁଁ ବିହାରର ରାଞ୍ଚି ଜିଲ୍ଲା ଅନ୍ତର୍ଗତ ''ଜରି'' ଗ୍ରାମର ଲାୟନ୍ସ୍ ନାଏକ ଆଲବର୍ଟ ଏକ୍କାଙ୍କୁ ଦେଶର ସର୍ବୋଚ୍ଚ ସାହସିକତା ପୁରସ୍କାର **''ପରମବୀର ଚକ୍ର''** ମରଣୋତ୍ତର ଭାବେ ପ୍ରଦାନ କରାଗଲା ।



# ଫ୍ଲାଇଙ୍ଗ ଅଫିସର ନିର୍ମଳଜିତ ସିଂ ଶେଖନ



''ଭାରତୀୟ ବାୟୁସେନା'' ୧୯୭୧ ମସିହାର ଭାରତ-ପାକିସ୍ତାନ ଯୁଦ୍ଧରେ ପ୍ରଥମ ''ପରମବୀର ଚକ୍ର'' ପୁରସ୍କାର ପାଇଥିଲା ଯାହାକୁ ଫ୍ଲାଇଙ୍ଗ ଅଫିସର ନିର୍ମଳଜିତ ସିଂ ଶେଖନ ଜିଣିବାର ସୌଭାଗ୍ୟ ଅର୍ଜନ କରିଥିଲେ । ଶ୍ରୀ ଶେଖନ ସେତେବେଳେ ଶ୍ରୀନଗର ଠାରେ ଅବସ୍ଥାପିତ ହୋଇ ଶ୍ରୀନଗର ସୁରକ୍ଷା ଦାୟିତ୍ୱରେ ଥାନ୍ତି ଓ ପାଇଲଟ୍ ଭାବେ କାମ କରୁଥାନ୍ତି । ୧୯୭୧ ମସିହା ଡ଼ିସେମ୍ବର ମାସ ୧୪ ତାରିଖରେ ପାକିସ୍ତାନ ଶ୍ରୀନଗର ବିମାନଘାଟୀକୁ ଆକ୍ରମଣ କଲା । ଘନ କୁହୁଡ଼ି ଯୋଗୁଁ ଭଲ ଦେଖାଯାଉ ନ ଥାଏ । ଶତ୍ରୁ ପକ୍ଷର ୬ଟି ଲଢୁଆ ବିମାନ ଶ୍ରୀନଗର ବିମାନଘାଟୀକୁ ଦଖଲ କରିବାକୁ ଚେଷ୍ଟା କରୁଥାନ୍ତି । ଫ୍ଲାଇଙ୍ଗ ଅଫିସର ଶେଖନ୍, ପ୍ରତିକୂଳ ପାଗ ସତ୍ତ୍ୱେ ତାଙ୍କ ଯୁଦ୍ଧ ବିମାନକୁ ଧରି ଆକାଶମାର୍ଗକୁ ଉଡ଼ିଗଲେ ଓ ଦୁଇଟି ଶତ୍ରୁପକ୍ଷର ବିମାନକୁ ଆକ୍ରମଣ କରି ଗୁଳି ମାରି ଖସାଇଦେଲେ । ଏହି ସମୟରେ ଅନ୍ୟ ଚାରୋଟି ଶତ୍ରୁବିମାନ ତାଙ୍କ ବିମାନକୁ ଘେରିଗଲେ । ସେ ଚେଷ୍ଟାକରିଥିଲେ ନିରାପଦ୍ତା କୌଶଳ ଅବଲମ୍ବନ କରି ରକ୍ଷା ପାଇଯାଇଥାନ୍ତେ । କିନ୍ତୁ ଏକ ସାହସୀ ଅଫିସରଭାବେ ଶତ୍ରୁଙ୍କ ସହିତ ଯୁଦ୍ଧ କରିବାକୁ ସେ ଶ୍ରେୟ ମଣିଲେ । ଯୁଦ୍ଧ କରୁ କରୁ ତାଙ୍କର ବୀରଗତି ହେଲା । କିନ୍ତୁ ଶ୍ରୀନଗର ଶତ୍ରୁ ଆକ୍ରମଣରୁ ରକ୍ଷା ପାଇଗଲା ।

ମାତ୍ର ୨୬ ବର୍ଷର ଏଇ ସାହସୀ ଯୁବକ ଫ୍ଲାଇଙ୍ଗ ଅଫିସର ନିର୍ମଳଜିତ ସିଂ ଶେଖନ୍‌ଙ୍କୁ ମାତୃଭୂମିର ସୁରକ୍ଷା ପାଇଁ ଶତ୍ରୁସମ୍ମୁଖରେ କରିଥିବା ସର୍ବୋଚ୍ଚ ତ୍ୟାଗ, ଅପୂର୍ବ ସାହସିକତା, ଉଡ଼ାଣ ଦକ୍ଷତା ଓ ନିଶ୍ଚିତ ମୃତ୍ୟୁ ସମ୍ମୁଖରେ କର୍ତ୍ତବ୍ୟ ନିଷ୍ଠା ପ୍ରଦର୍ଶନ ଯୋଗୁଁ ଦେଶର ସର୍ବୋଚ୍ଚ ସାହସିକତା ପୁରସ୍କାର ''ପରମବୀର ଚକ୍ର'' ମରଣୋତ୍ତର ଭାବେ ପ୍ରଦାନ କରାଗଲା ।



## ସେକେଣ୍ଡ ଲେଫ୍‌ଟ୍‌ନାଣ୍ଟ ଅରୁଣ କ୍ଷେତ୍ରପାଳ



ଭାରତୀୟ ଇନ୍‌ଫ୍ୟାଣ୍ଟ୍ରି 'ବାସନ୍ତାର' ନଦୀକୂଳରେ ଶତ୍ରୁପକ୍ଷର ଆକ୍ରମଣର ଦୃଢ଼ ମୁକାବିଲା କରୁଥାନ୍ତି । ୪୭ ଇନ୍‌ଫ୍ୟାଣ୍ଟ୍ରି ବ୍ରିଗେଡ୍ ସହିତ ପୁନାହର୍ଷ ରେଜିମେଣ୍ଟ ମିଶି ବାରାପିଣ୍ଡ ଓ ଗାଜିପୁରକୁ ଅକ୍ତିଆର କରିବା ପାଇଁ ନଦୀ ଉପରେ ପୋଲ ତିଆର କାର୍ଯ୍ୟରେ ଲାଗି ପଡ଼ିଥାନ୍ତି । ଇଞ୍ଜିନିୟର ମାନେ ଶତ୍ରୁପକ୍ଷର ମାଇନ୍‌ସ୍ ଫିଲ୍‌ଡ୍‌କୁ ସଫା କରି କରି ଚାଲିଥାନ୍ତି । ଡ଼ିସେମ୍ବର ୧୫ ତାରିଖ ସୁଦ୍ଧା ଯୋଜନା ଅନୁଯାୟୀ କାର୍ଯ୍ୟଶେଷ କରିବାକୁ ନିର୍ଦ୍ଦେଶ ମିଳିଥାଏ ।

ଏହି ସମୟରେ ଗାଜିଆବାଦ ରିଜର୍ଭ ଫରେଷ୍ଟରେ ଶତ୍ରୁପକ୍ଷ ପ୍ରତିଆକ୍ରମଣ ଆରମ୍ଭ କରିଦେଲେ । କୋରପାଲଠାରେ B-ସ୍କ୍ୱାଡ଼୍ରନ୍ ଦୁଇଟି ଟ୍ରୁପ ସହ ଶତ୍ରୁପକ୍ଷର ଆକ୍ରମଣର ସମ୍ମୁଖୀନ ହେଲେ । ଘମାଘୋଟ ଲଢ଼େଇ ଚାଲିଲା । ଶତ୍ରୁପକ୍ଷର ଆକ୍ରମଣରେ ଆମର ବହୁ ସଂଖ୍ୟକ ସୈନ୍ୟ ସେତେବେଳକୁ ମୃତାହତ ହେଲେଣି । ନିକଟରେ ଥିବା ସେକେଣ୍ଡ ଲେଫ୍‌ଟ୍‌ନାଣ୍ଟ ଅରୁଣ କ୍ଷେତ୍ରପାଳ B- ସ୍କ୍ୱାଡ଼୍ରନ୍ କମାଣ୍ଡରଙ୍କ ଠାରୁ ସାହାଯ୍ୟ ପାଇଁ ବେତାରବାର୍ତ୍ତା ପାଇ, ତାଙ୍କୁ ସାହାଯ୍ୟ କରିବା ନିମନ୍ତେ ଦୁଇଟି ଟ୍ୟାଙ୍କ ସହ ନିଜ ଦଳକୁ ନେଇ ବାହାରିଲେ । ଅତ୍ୟନ୍ତ କ୍ଷିପ୍ରଗତିରେ, ଅରୁଣ କ୍ଷେତ୍ରପାଳ ଶତ୍ରୁପକ୍ଷର ଆକ୍ରମଣକୁ ପ୍ରତିହତ କରିବାକୁ ମାଡ଼ିଚାଲିଲେ । ବାଟରେ, ଶତ୍ରୁପକ୍ଷ ତାଙ୍କର ଗତିରୋଧ କରିବାରୁ ଘମାଘୋଟ ଲଢ଼େଇ ହେଲା । କ୍ଷେତ୍ରପାଳ, ଶତ୍ରୁପକ୍ଷର ଗୁରୁତ୍ୱପୂର୍ଣ୍ଣ ସ୍ଥାନଗୁଡ଼ିକ ଉପରେ ତୀବ୍ର ଆକ୍ରମଣ କରି ସେମାନଙ୍କ ଇନ୍‌ଫ୍ୟାଣ୍ଟ୍ରି ଓ RCL କମାଣ ପଏଣ୍ଟକୁ ଅକ୍ତିଆର କରିନେଲେ । ଏହି ସମୟରେ ତାଙ୍କର ଏକ ଟ୍ୟାଙ୍କର କମାଣ୍ଡର ଶତ୍ରୁପକ୍ଷର କମାଣମାଡ଼ରେ ଟଳିପଡ଼ିଲେ ।

କ୍ଷେତ୍ରପାଳ ବର୍ତ୍ତମାନ ଏକାକୀ ଶତ୍ରୁପକ୍ଷକୁ ସମାନା କରୁଥାନ୍ତି ଓ B-ସ୍କ୍ୱାଡ଼୍ରନ୍‌ର ନିକଟବର୍ତ୍ତୀ ହେବାକୁ ଚେଷ୍ଟାକରୁଥାନ୍ତି । କିନ୍ତୁ ଶତ୍ରୁପକ୍ଷ ତାଙ୍କର ଗତିରୋଧ କରିବାକୁ ଚେଷ୍ଟା କରୁଥାନ୍ତି । ତରୁଣ କ୍ଷେତ୍ରପାଳ ଆଗ୍ରହର ସହ ଲଢ଼େଇ କରି ଶତ୍ରୁପକ୍ଷର ଏକ ଟ୍ୟାଙ୍କକୁ ଧ୍ୱଂସ କରିଦେଲେ । ତାଙ୍କର କ୍ଷିପ୍ରତା ଯୋଗୁଁ, ବହୁ କଷ୍ଟରେ ତାଙ୍କ କମାଣ୍ଡର ଟ୍ୟାଙ୍କ ସହ ତାଙ୍କର ଅନୁସରଣ କରୁଥାନ୍ତି । ହଠାତ୍, ଦ୍ୱିତୀୟ ଥର ଶତ୍ରୁପକ୍ଷ ତାଙ୍କ ଉପରେ ଆକ୍ରମଣ କଲେ । ଭୟଙ୍କର ଟ୍ୟାଙ୍କ ଲଢ଼େଇ ହେଲା । ଶତ୍ରୁପକ୍ଷର ଅନେକ ଟ୍ୟାଙ୍କକୁ ଆମ ସେନା ଧ୍ୱଂସ କରିଦେଲେ । ଅରୁଣ ଏକାକୀ ୪ଟି ଟ୍ୟାଙ୍କ ଧ୍ୱଂସ କରିଥିଲେ । କିନ୍ତୁ ଦୁର୍ଭାଗ୍ୟକୁ ଆମର ଗୋଟିଏ ଟ୍ୟାଙ୍କ ଗୁଳିମାଡ଼ରେ ଅକାମୀ ଓ ଅନ୍ୟଟି ଯାନ୍ତ୍ରିକ ତ୍ରୁଟି ଯୋଗୁ ଅଚଳ ହୋଇଗଲା । ଏହି ସମୟରେ ଅରୁଣଙ୍କ ଟ୍ୟାଙ୍କଟି ଗୋଳାମାଡ଼ରେ ଜଳିଗଲା । ଏହା ଦେଖି ତାଙ୍କ କମାଣ୍ଡର କ୍ୟାପଟେନ ମଲହୋତ୍ରା

କ୍ଷେତ୍ରପାଳଙ୍କୁ ଜଳନ୍ତା ଟ୍ୟାଙ୍କରୁ ବାହାରିବା ପାଇଁ ନିର୍ଦ୍ଦେଶ ଦେଲେ । କିନ୍ତୁ ଏହି ସାହସୀ ବୀର ହୃଦୟଙ୍ଗମ କଲେ ଯେ, ସେ ବାହାରିଗଲେ, ତାଙ୍କ ଟ୍ୟାଙ୍କରେ ଯେଉଁ ବନ୍ଧୁକ ଗୁଡ଼ିକ କାର୍ଯ୍ୟ କରୁଛନ୍ତି ସେଗୁଡ଼ିକ କାର୍ଯ୍ୟକ୍ଷମ ନହେବା ଦ୍ୱାରା ଶତ୍ରୁପକ୍ଷକୁ ମୁକାବିଲା କରିବାକୁ କିଛି ରହିବ ନାହିଁ । ସେ ପ୍ରତ୍ୟୁତ୍ତର ଦେଲେ : ''ସାର ! ମୁଁ ମୋ ଟ୍ୟାଙ୍କରୁ ବାହାରିବି ନାହିଁ । ଟ୍ୟାଙ୍କର ବନ୍ଧୁକ ଗୁଡ଼ିକ ଏବେ ବି କାର୍ଯ୍ୟରତ । ମୁଁ ନରାଧମ ମାନଙ୍କୁ ଉଚିତ ଶାସ୍ତି ଦେବି'' । ଏହାପରେ ସେ ଶତ୍ରୁପକ୍ଷର ଟ୍ୟାଙ୍କ ଗୁଡ଼ିକୁ ଧ୍ୱଂସ କରିବାରେ ଲାଗିଲେ । ତାଙ୍କ ଦ୍ୱାରା ଧ୍ୱଂସ ପାଇଥିବା ଶତ୍ରୁପକ୍ଷର ଶେଷ ଟ୍ୟାଙ୍କ ତାଙ୍କଠାରୁ ୧୦୦ ମିଟର ଦୂରରେ ଥିଲା । ଏହି ସମୟରେ ତାଙ୍କର ଜଳନ୍ତା ଟ୍ୟାଙ୍କ ଉପରକୁ ଶତ୍ରୁପକ୍ଷ ପୁଣି କମାଣମାଡ଼ କରିବାରୁ ସେ ସେଠାରେ ଟଳି ପଡ଼ିଲେ । ତରୁଣ କ୍ଷେତ୍ରପାଳଙ୍କ ଜୀବନ ଦୀପ ମାତ୍ର ୨୧ ବର୍ଷରେ ନିର୍ବାପିତ ହୋଇଗଲା ସିନା, କିନ୍ତୁ ତାଙ୍କର ବୀରୋଚିତ କାର୍ଯ୍ୟ ଯୋଗୁଁ ଶତ୍ରୁପକ୍ଷକୁ ସମ୍ପୂର୍ଣ୍ଣ ରୂପେ ପ୍ରତିହତ କରାଯାଇଥିଲା ।

ମହାରାଷ୍ଟ୍ରର ପୁନେର ଜଣେ ବରିଷ୍ଠ ସାମରିକ ଅଧିକାରୀ ବ୍ରିଗେଡ଼ିୟର ଏମ୍.ଏଲ୍. କ୍ଷେତ୍ରପାଳଙ୍କ ପୁତ୍ର ସେକେଣ୍ଡ ଲେଫ୍‌ଟ୍‌ନାଣ୍ଟ ଅରୁଣ କ୍ଷେତ୍ରପାଳଙ୍କୁ ମାତୃଭୂମିର ସୁରକ୍ଷା ପାଇଁ ଶତ୍ରୁ ସମ୍ମୁଖରେ ତାଙ୍କର ଆତ୍ମତ୍ୟାଗ ପ୍ରଦର୍ଶନ ନିମନ୍ତେ ଦେଶର ସର୍ବୋଚ୍ଚ ସାହସିକତା ପୁରସ୍କାର ''ପରମବୀର ଚକ୍ର'' ମରଣୋତ୍ତର ଭାବେ ପ୍ରଦାନ କରାଗଲା । ବାସ୍ତବରେ, ଏହି ବୀର ଅଭୂତପୂର୍ବ କର୍ତ୍ତବ୍ୟନିଷ୍ଠା ପ୍ରଦର୍ଶନ କରି ଆମର ମହାନ ସାମରିକ ପରମ୍ପରାର ଏକ ଅଂଶ ହୋଇପାରିଛନ୍ତି ।



# ମେଜର ହୋସିଁୟାର ସିଂ



୧୯୭୧ ମସିହା ଭାରତ-ପାକିସ୍ତାନ ଯୁଦ୍ଧର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସଂଗ୍ରାମ ହେଉଛି 'ବାସନ୍ତାର' ନଦୀକୂଳ ସଂଘର୍ଷ । ଆମର ୫୪ ଇନଫାଣ୍ଟ୍ରି ଡ଼ିଭିଜନଙ୍କୁ ପାକିସ୍ତାନୀ ସୈନ୍ୟଙ୍କ ଆକ୍ରମଣକୁ ପ୍ରତିହିତ କରିବାକୁ ଓ ''ଜାଫରୱାଲ'' ଅଞ୍ଚଳକୁ ଅକ୍ତିଆର କରିବା ପାଇଁ ଦାୟିତ୍ୱ ଦିଆଯାଇଥିଲା । ଏଥିପାଇଁ ୪୭ ଇନଫାଣ୍ଟ୍ରି ବ୍ରିଗେଡ଼ଙ୍କୁ ବାସନ୍ତାର ନଦୀ ଉପରେ ଏକ ପୋଲ ରାସ୍ତା ତିଆରି କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଥିଲା । ନଦୀର ଦୁଇ କୂଳରେ ଶତ୍ରୁପକ୍ଷ ପ୍ରାୟ ୧୨୦୦ ମିଟର ଯାଏଁ ଭୂମିତଳ ବିସ୍ଫୋରକ ପୋତି ରାସ୍ତା ବନ୍ଦ କରିଦେଇଥିଲେ । ଡ଼ିସେମ୍ବର ମାସ ୫-୬ ତାରିଖରେ ୩ ଗ୍ରିନେଡ଼ିୟର B ଓ C କମ୍ପାନୀ ମାଇନ୍‌ସ୍ ଫିଲ୍ଡ୍ ଅଞ୍ଚଳରେ ଆକ୍ରମଣ ଚଳାଇଥାନ୍ତି । ଘମାଘୋଟ ଲଢ଼େଇ ଚାଲିଥାଏ । ଶତ୍ରୁପକ୍ଷର ତୀବ୍ର ପ୍ରତିରୋଧ ସତ୍ତ୍ୱେ ଆମ ସୈନ୍ୟବାହିନୀ ଲକ୍ଷ୍ୟ ପୂରଣ କରିବାରେ ସମର୍ଥ ହେଲେ । ଭୟଙ୍କର ସମ୍ମୁଖ ସଂଘର୍ଷରେ ବଙ୍କର ଭିତରୁ ଶତ୍ରୁମାନଙ୍କୁ ନିକାଲି ଦିଆଯାଉଥାଏ । C କମ୍ପାନୀର କମାଣ୍ଡର ମେଜର ହୋସିୟାର ସିଂ, ଜରପାଲକୁ ଅଧିକାର କଲାବେଳେ ତାଙ୍କର ଅସୀମ ସାହସ ଓ ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନ କରିପାରିଥିଲେ ।

ଶତ୍ରୁମାନେ ହିଂସ୍ର ଓ ସଂକଳ୍ପବଦ୍ଧ ଭାବେ ଆକ୍ରମଣ କରୁଥାନ୍ତି । ମେଜର ହୋସିୟାର ସିଂ ଏହାକୁ ପ୍ରତିହତ କରୁଥାନ୍ତି । ଡ଼ିସେମ୍ବର ୧୬ ତାରିଖରେ ୩-ଗ୍ରିନେଡ଼ିୟର୍ସଙ୍କ ଉପରେ ଶତ୍ରୁପକ୍ଷ ଲଗାତାର ୫ଥର ଆକ୍ରମଣ କଲେ । ଏହି ବାଟାଲିୟନ, B-ସ୍କ୍ୱାଡ଼୍ରନ୍‌ଙ୍କ ସହାୟତାରେ ଏହାର ଦୃଢ଼ ମୁକାବିଲା କରି ଶତ୍ରୁପକ୍ଷର ଅଶେଷ କ୍ଷତି ଘଟାଇ ସେମାନଙ୍କୁ ହଟାଇଦେଇଥିଲେ । ମେଜର ହୋସିୟାର ସିଂ ଶତ୍ରୁପକ୍ଷର ଗୋଳା କମାଣମାଡ଼କୁ ବେଖାତିର କରି ନିଜ ସୈନ୍ୟମାନଙ୍କ ପାଖକୁ ଯାଇ ପ୍ରେରଣା ଦେଉଥାନ୍ତି । ଡ଼ିସେମ୍ବର ୧୭ ତାରିଖରେ ଏହି ସାହସୀ ଅଫିସର ଶତ୍ରୁପକ୍ଷର ଗୁଳିମାଡ଼ରେ ଆହତ ହୋଇ ମଧ୍ୟ, ନିଜ ସୁରକ୍ଷା ବିଷୟରେ ଚିନ୍ତା ନ କରି ଯୁଦ୍ଧ କରୁଥାନ୍ତି । ହଠାତ୍, ଶତ୍ରୁପକ୍ଷର ଗୋଳାମାଡ଼ରେ ଆମର ଏକ ମେସିନ୍‌ଗନ୍ ପୋଷ୍ଟ ଅଚଳ ହୋଇପଡ଼ିଲା । ତତ୍‌କ୍ଷଣାତ୍, ସେ ଦୌଡ଼ିଯାଇ ତାକୁ ତିଆରି କରି ଶତ୍ରୁମାନଙ୍କ ଉପରକୁ ସେଥିରୁ ଗୁଳିମାଡ଼ କଲେ । ଗୁରୁତର ଆହତ ହୋଇ ମଧ୍ୟ ସେ ଯୁଦ୍ଧକ୍ଷେତ୍ରରୁ ଯୁଦ୍ଧ ନ ସରିଲା ପର୍ଯ୍ୟନ୍ତ ଯିବାକୁ ମନା କରି ଶତ୍ରୁପକ୍ଷର ଅଶେଷ କ୍ଷତି ଘଟାଇ ପାରିଥିଲେ । ତାଙ୍କର ଏହି ସାହସିକ କାର୍ଯ୍ୟଯୋଗୁଁ ଶତ୍ରୁପକ୍ଷର ଆକ୍ରମଣକୁ ପ୍ରତିହତ କରାଯାଇପାରିଥିଲା ।

ଘନ ଘନ ଶତ୍ରୁ ଆକ୍ରମଣର ସମ୍ମୁଖୀନ ହୋଇ ମଧ୍ୟ, ଶତ୍ରୁମାନଙ୍କ କବଳରୁ ଆମ ଅଞ୍ଚଳକୁ ମୁକ୍ତ କରିବା ଦିଗରେ ତାଙ୍କର ଉଲ୍ଲେଖନୀୟ ଅବଦାନ ଯୋଗୁଁ ହରିଆନାର ରୋହତକ ଜିଲ୍ଲାର ଶିସାନା ଗ୍ରାମରେ ଜନ୍ମଗ୍ରହଣ କରିଥିବା ମେଜର ହୋସିଆର ସିଂଙ୍କୁ ଦେଶର ସର୍ବୋଚ୍ଚ ସାହସିକତା ପୁରସ୍କାର ''ପରମବୀର ଚକ୍ର'' ପ୍ରଦାନ କରାଯାଇଥିଲା ।

## ଉପସଂହାର

ଏତଦ୍‌ବ୍ୟତୀତ, ୧୯୮୭ ମସିହା ନଭେମ୍ବର ୨୫ ତାରିଖରେ ଶାନ୍ତିରକ୍ଷା ବାହିନୀର ମେଜର ରାମସ୍ୱାମୀ ପରମେଶ୍ୱରନଙ୍କୁ ଶ୍ରୀଲଙ୍କାରେ ତାଙ୍କର ଅପୂର୍ବ ବୀରତ୍ୱ ପ୍ରଦର୍ଶନ ପାଇଁ ମରଣୋତ୍ତର ଭାବେ ଓ ୧୯୮୮ ମସିହା ଜାନୁଆରୀ ମାସ ୨୬ ତାରିଖରେ, ସୁବେଦାର ବନ ସିଂହଙ୍କୁ ସିଆଚେନରେ ଅଭୂତପୂର୍ବ ସାହସିକତା ପ୍ରଦର୍ଶନ ପାଇଁ ''ପରମବୀର ଚକ୍ର'' ପୁରସ୍କାର ପ୍ରଦାନ କରାଯାଇଥିଲା । ଗତବର୍ଷ ମଇମାସରେ ଜାମ୍ମୁକାଶ୍ମୀରର ''କାରଗିଲ୍‌'' ଅଞ୍ଚଳରେ ପାକିସ୍ତାନ ସହ ଭାରତର ଭୟଙ୍କର ଅଘୋଷିତ ଯୁଦ୍ଧ ହୋଇଥିଲା । ଭାରତୀୟ ସୈନ୍ୟବାହିନୀ ଏହି ''ଅପରେସନ ବିଜୟ'' ଅଭିଯାନରେ ''ଭାରତୀୟ ବାୟୁସେନା'' ସହ ମିଳିତ ହୋଇ ଅତ୍ୟନ୍ତ ନିଷ୍ଠାର ସହ ଲଢ଼ି ପାକିସ୍ତାନ ସେନାଙ୍କୁ ଆମ ଅଞ୍ଚଳରୁ ବିତାଡ଼ିତ କରିପାରିଥିଲେ । ଏଥିପାଇଁ ଆମ ସୈନ୍ୟବାହିନୀର ଅନେକ ସୈନ୍ୟ ବୀରତ୍ୱ ଓ ସାହସ ସହ ଲଢ଼ି, ଯୁଦ୍ଧ କ୍ଷେତ୍ରରେ ପାଣବଳି ଦେଇ ଶହୀଦ ହୋଇଯାଇଥିଲେ । ଏଣୁ, ଏହି ଅମର ଜବାନମାନଙ୍କ ମଧ୍ୟରୁ, ୪ ଜଣ ବୀରଙ୍କୁ ଚଳିତ ବର୍ଷ ଜାନୁୟାରୀ ମାସ ୨୬ ତାରିଖରେ, ଭାରତର ମାନ୍ୟବର ରାଷ୍ଟ୍ରପତି ଶ୍ରୀ କେ. ଆର୍‌. ନାରାୟଣନ୍ ଦେଶର ସର୍ବୋଚ୍ଚ ସାମରିକ ପୁରସ୍କାର ''ପରମବୀର ଚକ୍ର'' ପ୍ରଦାନ କରିଅଛନ୍ତି । ଏହି ବୀର ସୈନିକ ମାନେ ହେଲେ; କ୍ୟାପଟେନ ବିକ୍ରମ ବାତ୍ରା (ମରଣୋତ୍ତର), ଲେଫ୍‌ଟ୍‌ନାଣ୍ଟ ମନୋଜ କୁମାର ପାଣ୍ଡେ (ମରଣୋତ୍ତର), ରାଇଫଲମ୍ୟାନ୍ ସଞ୍ଜୟ କୁମାର ଓ ଗ୍ରିନେଡ଼ିୟର ଯୋଗେନ୍ଦ୍ର ସିଂହ ଯାଦବ । ଏହିପରି ଭାବେ, ଭାରତ ସ୍ୱାଧୀନ ହେବା ପରଠାରୁ, ୨୧ ଜଣଙ୍କୁ ଏଯାବତ୍ ''ପରମବୀର ଚକ୍ର'' ପୁରସ୍କାର ପ୍ରଦାନ କରାଯାଇଛି । ଏହି ଅମର ଜବାନମାନଙ୍କର ଅମରଗାଥା ପରବର୍ତ୍ତୀ ସଂସ୍କରଣରେ ପ୍ରକାଶ କରିବା ପାଇଁ ଲେଖକ ଚେଷ୍ଟା କରିବ ।

ଅତି ଗୌରବର ବିଷୟ ଯେ, ଗତବର୍ଷ କାରଗିଲଠାରେ ମଧ୍ୟ ଓଡ଼ିଶାର ୧୦ ଜଣ ବୀର ସୈନିକ ଅପୂର୍ବ ସାହସିକତା ପ୍ରଦର୍ଶନ କରି ମାତୃଭୂମିର ଟେକ ସବୁଦିନ ପାଇଁ ରଖି, ଶହୀଦ ହୋଇଯାଇଛନ୍ତି; ଯେଉଁମାନଙ୍କ ପାଇଁ ଆମେ ଆଜି ଗର୍ବିତ । ୧୯୯୯ ମସିହା ମେ ମାସ ୧୯ ତାରିଖଠାରୁ, କାରଗିଲ୍‌ଠାରେ ପାକିସ୍ତାନୀ ସେନା ଓ ଉଗ୍ରପନ୍ଥୀମାନଙ୍କୁ ଘଉଡ଼େଇବା ପାଇଁ ପ୍ରଥମ ଲଢ଼େଇ ଆରମ୍ଭ ହୋଇଥିଲା । ଏଥିରେ ଓଡ଼ିଶାର ପ୍ରଥମ ଶହୀଦ ଶ୍ରୀ ଗୋପିନାଥ ମହାରଣା ହସି ହସି ଦେଶ ପାଇଁ ପ୍ରାଣବଳି ଦେଇଥିଲେ । ଏହାପରେ, ଫ୍ଲାଇଟ ଇଞ୍ଜିନିୟର, ଶ୍ରୀ ରାଜକିଶୋର ସାହୁ, ଅନୁପ୍ରବେଶକାରୀଙ୍କର ଗୁପ୍ତ ବଙ୍କର ଗୁଡ଼ିକୁ ଅନୁସନ୍ଧାନ କରିବାକୁ, ହେଲିକ୍ୟାପଟ୍‌ରରେ ଯାଉଥିଲା ବେଳେ, ଶତ୍ରୁପକ୍ଷର ବୋମାମାଡ଼ରେ ଶହୀଦ ହୋଇଥିଲେ । ପରେ ପରେ ନାଏକ ଶ୍ରୀ ମାନସରଞ୍ଜନ ସାହୁ, ମେଜର ପଦ୍ମପାଣି ଆଚାର୍ଯ୍ୟ, ନାଏକ ସଚ୍ଚିଦାନନ୍ଦ ମଲ୍ଲିକ, ନାଏକ ଏସ୍. ଶ୍ରୀନିବାସ ପାତ୍ର, ସିପାହୀ ରତନ ପ୍ରଧାନ, ସିପାହୀ ଗଙ୍ଗାରାମ ଦାସ, ସିପାହୀ ନିରଞ୍ଜନ ବେହେରା ଓ ସିଗ୍‌ନାଲମ୍ୟାନ ପ୍ରମୋଦ ପଟ୍ଟନାୟକ,

ଯୁଦ୍ଧକ୍ଷେତ୍ରରେ ଅଭୂତପୂର୍ବ ବୀରତ୍ୱ ପ୍ରଦର୍ଶନ କରି ଶହୀଦ ହୋଇଯାଇଛନ୍ତି । ସେମାନଙ୍କର ଦେଶପ୍ରେମ, ମାତୃଭୂମି ପାଇଁ ପ୍ରାଣ ବିସର୍ଜନ, ଓଡ଼ିଶା ପାଇଁ ଗର୍ବ ଓ ଗୌରବର ବିଷୟ ହୋଇ, ଇତିହାସ ପୃଷ୍ଠାରେ ସବୁଦିନ ପାଇଁ ରହିଗଲା । ଏହି ଅମର ଶହୀଦମାନଙ୍କ ଭିତରୁ, ମେଜର ପଦ୍ମପାଣି ଆଚାର୍ଯ୍ୟଙ୍କୁ ତାଙ୍କର ଅପୂର୍ବ ସାହସିକତା ନିମନ୍ତେ **''ମହାବୀର ଚକ୍ର''** ପୁରସ୍କାର ମରଣୋତ୍ତର ଭାବେ ପ୍ରଦାନ କରାଯାଇଅଛି ।

ଜୟହିନ୍ଦ



ସୌଜନ୍ୟ : ଭାରତ ସରକାରଙ୍କ ପ୍ରତିରକ୍ଷା ମନ୍ତ୍ରଣାଳୟ ଅଧିନସ୍ଥ ଇତିହାସ ବିଭାଗ (Historical Section) ଦ୍ୱାରା ପ୍ରକାଶିତ STORIES OF HEROISM (PART - I), 1987 ରୁ ସଂଗୃହୀତ ।

# ଲେଖକ ପରିଚୟ



ଶ୍ରୀ ଶ୍ରୀକାନ୍ତ କୁମାର ମିଶ୍ର (ଜନ୍ମ ୧୯୬୪ ମସିହା ମେ' ମାସ ୨୭ ତାରିଖ, ସଦାଶିବପୁର ଗ୍ରାମ ଜିଲ୍ଲା ଢେଙ୍କାନାଳ) ଶୈଶବରୁ ସାହିତ୍ୟ, ସଙ୍ଗୀତ, ଚିତ୍ରକଳା ଓ ଅଭିନୟ ପ୍ରତି ଆକୃଷ୍ଟ ହୋଇପଡ଼ିଥିଲେ । ସେ ଅଧୁନା ରାଜ୍ୟ ସରକାରଙ୍କ ଅଧିନସ୍ଥ ଅର୍ଥ ବିଭାଗ (ସଚ୍ଚିବାଳୟ ଭୁବନେଶ୍ୱର)ରେ କାର୍ଯ୍ୟରତ । ତାଙ୍କ ରଚିତ କବିତା 'ପରିବର୍ତ୍ତନ', 'ସ୍ତୁତି' ଓ 'ସାଥି' ଏବଂ ଗଳ୍ପ 'ବ୍ୟବଧାନ', 'ସନ୍ତକ' , 'ନିଃସଙ୍ଗ ମଣିଷ' 'ଭିଟାମାଟି' ଓ 'ଭିନ୍ନ ସକାଳର ସୂର୍ଯ୍ୟ' ବିଭାଗୀୟ ସ୍ମରଣିକାରେ ପ୍ରକାଶିତ ହୋଇଛି; ଏବଂ ତନ୍ମଧ୍ୟରୁ କବିତା 'ପରିବର୍ତ୍ତନ' ଓ ଗଳ୍ପ 'ଭିଟାମାଟି' ପୁରସ୍କୃତ ହୋଇଛି । ଏତଦ୍ ବ୍ୟତୀତ ସେ ସଚ୍ଚିବାଳୟର ଆନ୍ତଃ ବିଭାଗୀୟ ପ୍ରବନ୍ଧ ପ୍ରତିଯୋଗିତା ୧୯୯୨ରେ ଅଂଶ ଗ୍ରହଣ କରି ''ଭାରତୀୟ ରାଜନୀତିରେ ଗଣତନ୍ତ୍ରର ସ୍ଥାନ'' ପାଇଁ ପୁରସ୍କୃତ ହୋଇଛନ୍ତି । ପିଲାଦିନୁ ଦେଶପ୍ରେମରେ ଉଦ୍‌ବୁଦ୍ଧ ଶ୍ରୀ ମିଶ୍ରଙ୍କର ସୈନିକ ହେବାକୁ ପ୍ରବଳ ଇଚ୍ଛା ଥିଲେ ବି, ସୁଯୋଗ ଅଭାବରୁ ସେ ସୈନିକ ହୋଇପାରି ନ ଥିଲେ; କିନ୍ତୁ, ସୈନିକ ମାନଙ୍କ ପ୍ରତି ତାଙ୍କର ଅଶେଷ ଅନୁରାଗ ଅନ୍ତଃସଲିଳା ଫଲ୍‌ଗୁ ଭଳି ତାଙ୍କ ହୃଦୟରେ ପ୍ରବାହିତ ହେଉଅଛି । ଏହି ଅନୁରାଗର ପ୍ରଥମ ପରିପ୍ରକାଶ ହେଉଛି ଏହି କ୍ଷୁଦ୍ର ପୁସ୍ତକ ।